# ଅନୁଭୂତିର ଇସ୍ତାହାର

ନରେନ୍ଦ୍ର ନେପାକ



**ଅନୁଭୂତିର ଇସ୍ତାହାର**
ନରେନ୍ଦ୍ର ନେପାକ
**ପ୍ରକାଶିକା**
ମମତା ନେପାକ
ଏନ୍ -୧ /୧୨୧
ଆଇଆରସି ଭିଲେଜ
ଭୁବନେଶ୍ୱର-୧୫
ମୋ-୭୯୭୮୨୫୩୪୩୯
୯୦୯୦୭୯୪୯୦୨
**ପ୍ରଥମ ପ୍ରକାଶ**
୨୦୨୩
**ମୁଦ୍ରଣ**
ସାହିତ୍ୟ ସିନ୍ଧୁ, ଭୁବନେଶ୍ୱର - ୩
**ମୂଲ୍ୟ :** ଟ.୧୧୦/- (ଶହେ ଦଶ ଟଙ୍କା ମାତ୍ର)

**ANUBHUTIRA ISTAHAR**
**by**
Narendra Nepak
**Published by**
Mamata Nepak
N-1/121, IRC Village,
Bhubaneswar-751015
Mob-7978253439
9090794902
**1st Edition**
2023
**Printed at**
Sahitya SindhuBhubaneswar -3
**Price :** Rs.110/- (Rupees One Hundred Ten Only)



# ଉତ୍ସର୍ଗ

ଏହି ଗଳ୍ପ ସଂକଳନଟିକୁ ମୋର ପୂଜ୍ୟ ପିତା ତଥା ସାରସ୍ୱତସାଧକ ସ୍ୱର୍ଗତ ଭାଗୀରଥି ନେପାକଙ୍କୁ ଉତ୍ସର୍ଗ କରୁଛି ଓ ଶ୍ରୀ ଜଗନ୍ନାଥଙ୍କୁ ପ୍ରଣିପାତପୂର୍ବକ ତାଙ୍କର କୃପା ମୋର ପ୍ରିୟ ବିଶ୍ୱବାସୀଙ୍କ ନିମିତ୍ତ ଭିକ୍ଷା କରୁଛି ।

# କୃତଜ୍ଞତା



**ବିଜୟ କୁମାର ପାତ୍ର**

ଏନ୍-୫/୧୭୦, ଆଇ.ଆର.ସି ଭିଲେଜ୍,

ଭୁବନେଶ୍ୱର-୭୫୧୦୧୫

ଯୁବ ଉଦ୍ୟୋଗୀ, ଚଳଚ୍ଚିତ୍ର ପ୍ରଯୋଜକ ଓ ସମାଜସେବୀ

ଜନ୍ମ-୧୫.୦୭.୧୯୬୭

ପିତା- ଶତ୍ରୁଘ୍ନ ପାତ୍ର

ମାତା- କୁସୁମ ଦେବୀ

ବଂଧୁ ଶ୍ରୀ ବିଜୟ କୁମାର ପାତ୍ରଙ୍କର ସହଯୋଗ ଓ ଉତ୍ସାହ ଯୋଗୁଁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ଓ ଈଶ୍ୱରଙ୍କ ନିକଟରେ ତାଙ୍କର ମଙ୍ଗଳ କାମନା କରୁଅଛି ।

ଶ୍ରୀ ନରେନ୍ଦ୍ର ନେପାକ



# ନିଜ କଥା

୧୯୬୬ ଜୁଲାଇ ମାସ ଚଉଦ ତାରିଖ ଦିବା ୧୨ଘଣ୍ଟାରେ ମୋର ଜନ୍ମ କ୍ୟାପିଟାଲ୍ ହସ୍ପିଟାଲରେ ହେବାପରେ ମୋର ଶିକ୍ଷା ଓ ଜୀବନ ସଂସ୍କାରରେ ମୋର ପୂଜ୍ୟ ପିତାଙ୍କ ପ୍ରଚ୍ଛନ୍ନ ଆଶୀର୍ବାଦ ଓ ମାଙ୍କର ମଙ୍ଗଳକାମନା ବ୍ୟତୀତ ଏ ସମାଜରେ ନିତିପ୍ରତିଦିନ ଭେଟିଥିବା ଓ ଭେଟୁଥିବା ବ୍ୟକ୍ତି ତଥା ପରିବେଶର ଏକ ପରିଣାମସ୍ୱରୂପ ବୃତ୍ତିରେ ଓକିଲାତି ଓ ପ୍ରବୃତ୍ତିରେ କେତେବେଳେ ଲେଖାଲେଖିକୁ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ କରିଦେଇଛି ତାହା ମୋତେ ଜଣାନାହିଁ ।

ଅତିରଞ୍ଜିତ କରି ଜୀବନରେ ବଞ୍ଚିବା ଅପେକ୍ଷା ସ୍ୱାଭିମାନକୁ ସଂପଦ ବୋଲି ଭାବି ଜୀବନଟିଏ ବଞ୍ଚିବା କଷ୍ଟକର ଭଳି ପ୍ରତିଭାତ ହେଉଥିଲେ ମଧ୍ୟ ଆଜିର ଅହଂ ସର୍ବସ୍ୱ ଓ ଦୁଃଖ ଓ ସଂଘର୍ଷ କରି ରହୁଥିବା ଅଗଣିତ ନରନାରୀ, ପରିବାର ଓ ବ୍ୟକ୍ତିବିଶେଷଙ୍କୁ ଭେଟିଲେ ଜାଣିହୁଏ ଯେ ସତରେ କେତେ ଜଞ୍ଜାଳମୟ ଏ ଜୀବନ । ତଥାପି ଏଠି ପରସ୍ପର ପ୍ରତି ସ୍ନେହ, ଶ୍ରଦ୍ଧା, ଭକ୍ତି ଅଛି ଓ ଥିବ । ଓଡିଆ ଜାତିକୁ ତଥା ଓଡିଆଙ୍କ ମେରୁଦଣ୍ଡ ଭାଙ୍ଗିଦେବାଭଳି ଘଟଣା, ବାତ୍ୟା, ବନ୍ୟା, ରେଳ ଦୁର୍ଘଟଣା, ଅନାହାର, ଅପମୃତ୍ୟୁ, ସାଇବର ଠକେଇ ତଥା ଅନେକ ବିରୋଧାତ୍ମକ ଶକ୍ତି ଅହରହ ସେମାନଙ୍କ ଅସ୍ତିତ୍ୱକୁ ଜାହିର କରୁଛନ୍ତି । ତଥାପି ମୁଁ ନିଃସନ୍ଦେହରେ କହିପାରିବି ଯେ ସାହିତ୍ୟ ଯେତେଦିନ ପର୍ଯ୍ୟନ୍ତ ଓଡିଆଙ୍କ ସଭ୍ୟତା ଓ ସଂସ୍କୃତି ନିମିତ୍ତ କଲମମୂନରେ ତାର ସଂଗ୍ରାମ ଜାରି ରଖିଥିବ ଏ ଜାତି ପଛେଇବ ନାହିଁ, ହୁଏତ କ୍ଷଣଟିଏ ପାଇଁ ଅଟକିଯାଇପାରେ । ନିସ୍ତବ୍ଧ ନୀରବତାରେ ଆତ୍ମାକୁ ଯେତେ ଦୋହଲାଇଦେଲା ଭଳି ଘଟଣା ଏ ମାଟିରେ ଘଟୁଛି ତାର ହିସାବ ରଖିବା କଷ୍ଟକର ।

ତଥାପି ମୁଁ ଧନ୍ୟବାଦ ଦେବି ସେହି ଚରିତ୍ରମାନଙ୍କୁ ଯେଉଁମାନେ ମୋ ଜୀବନପୃଷ୍ଠାରେ କିଛି ଦିନ ଅବା ଅଳ୍ପ ସମୟପାଇଁ ଆସି ମୋତେ କଲମ ଚାଳନା କରିବାପାଇଁ ଉତ୍ସାହିତ କଲେ, ଯାହାର ପରିଣାମ ଏହି "ଅନୁଭୂତିର ଇସ୍ତାହାର" । ସର୍ବୋପରି ସେହି ଡିଟିପି କରିଥିବା ଭାଇମାନଙ୍କୁ, ପୁସ୍ତକଟିକୁ ରୂପରେଖ ଦେବାପାଇଁ ସହଯୋଗ କରିଥିବା ଆର୍ଟିଷ୍ଟ , ମୁଦ୍ରଣ କାର୍ଯ୍ୟରେ ସହଯୋଗ ଦେଇଥିବା ବ୍ୟକ୍ତିବିଶେଷ ଓ ସର୍ବୋପରି ମୋର ସହଧର୍ମିଣୀ ମମତା , ବଡଭାଇ ଶୁଭେନ୍ଦ୍ର ନେପାକ (ରିଟାୟାର୍ଡ ଫାର୍ମାସିଷ୍ଟ, ବଲାଙ୍ଗୀର) ଓ ବନ୍ଧୁ ସୌମେନ୍ଦ୍ର ଜେନା ଓ ବନ୍ଧୁ ବିଜୟ କୁମାର ପାତ୍ର, ସୁରେନ୍ଦ୍ର ନାଥ ବ୍ରହ୍ମା ଯାହାଙ୍କ ଯୋଗୁଁ ଆଜି ପୁସ୍ତକଟି ପ୍ରକାଶ ପାଇପାରିଲା ଓ ମାଆ ଅନୁସୂୟା ଦେବୀଙ୍କୁ ହୃଦୟର ଅନ୍ତରତମ ପ୍ରଦେଶରୁ ଧନ୍ୟବାଦ ଓ ଯଥାମାନ୍ୟ ଜଣାଉଛି । ଯେଉଁ ପାଠକ ପାଠିକା ଶୁଭେଚ୍ଛୁ ଓ ବନ୍ଧୁମାନେ ମୋତେ ଓ ମୋର ଲେଖାକୁ ସମାଲୋଚନା କରନ୍ତି ଓ ଉତ୍ସାହିତ କରନ୍ତି ସେମାନଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

**ଶ୍ରୀ ନରେନ୍ଦ୍ର ନେପାକ**

# ସୂଚୀପତ୍ର

# ପେଟ

ସତୁରିତମ ସ୍ୱାଧୀନତା ଦିବସର ବର୍ଣ୍ଣିଳ ସନ୍ଧ୍ୟା। ସମଗ୍ର ଦେଶ ସହ ମୁଁ ରହୁଥିବା ସହର ଏହି ପବିତ୍ର ଦିବସ ପାଳନ କରିସାରି ସହରରେଥିବା ଅଫିସ୍, ଦୋକାନ ବଜାର ଅବା ମଲ୍‌ରେ ଅଲୋକମାଳା ସଜ୍ଜିତ ହୋଇ ଚିକ୍‌ମିକ୍‌ର ସହର ପାଲଟିଥିଲା। ସ୍ୱାଧୀନ ତ୍ରିରଙ୍ଗା ଫର୍‌ଫର୍ ହୋଇ ଅଟ୍ଟାଳିକା ଉପରେ ସଗର୍ବେ ଉଡୁଥିଲା। ଦ୍ୱିତୀୟ ଶନିବାରର ସନ୍ଧ୍ୟା, କିଛି ଆବଶ୍ୟକ ସାମଗ୍ରୀ ଖର୍ଦ୍ଦି କରିବାକୁ ମନସ୍ଥକରି ସପତ୍ନୀକ ସହରର କେନ୍ଦ୍ର ଅଞ୍ଚଳରେ ଥିବା ମଲ୍ ନିକଟରେ ପହଞ୍ଚିବା ପରେ, ଧର୍ମପତ୍ନୀ ଗୋଟିଏ ପୋଷାକ ଦୋକାନ ଆଗରେ ୫୦ ପ୍ରତିଶତ ଡିସକାଉଣ୍ଟରେ ଶାଢୀ ମିଳୁଥିବାର ବିଜ୍ଞାପନ ଦେଖି କହିଲେ, 'ଟିକିଏ ଶାଢୀ ଦେଖିବାକୁ ଇଛା, ଗଲେ ହୁଅନ୍ତା ନି ?' ମୁଁ କହିଲି 'କାହିଁକି ନୁହେଁ ? ତୁମେ ଯାଅ। ଭିତରେ ମହିଳାଙ୍କ ଭିଡ, ଏଣୁ ମୁଁ ବାହାରେ ଖାଲିପଡିଥିବା ଚେୟାର୍‌ରେ ବସିଛି, ତୁମେ ଫେରିଲେ ବାକି ଖରିଦ୍‌ଦାରୀ କରିବା।' ପତ୍ନୀ ଶାଢୀଦୋକାନ ଭିତରକୁ ଯିବା ପରେ, ମୁଁ ମଲ୍‌ର ସାମ୍ନାରେ ଗୋଟିଏ ଖାଲିଚେୟାର୍‌ରେ ବସି ପାଖରେ ପଡିଥିବା ଉଠାଦୋକାନୀମାନଙ୍କ ବାଣିଜ୍ୟ କାରବାରକୁ ଦେଖିବାରେ ନିମଗ୍ନ ହୋଇଗଲି। ଭେଜ୍ ରୋଲ୍, ନନ୍‌ଭେଜ୍ ରୋଲ୍, ଗୁପ୍‌ଚୁପ୍‌ଠାରୁ ଆରମ୍ଭ କରି ବରା, ପିଆଜୀ, ଏବଂ ଅନ୍ୟାନ୍ୟ ଚଟ୍‌ପଟି ଖାଦ୍ୟର ଅପୂର୍ବସମ୍ଭାର। ସହରର ନରନାରୀ, ତଥା କିଶୋର କିଶୋରୀମାନେ ଆନନ୍ଦରେ ଖାଇବାରେ ବ୍ୟସ୍ତ। ଠେଲା ଦୋକାନ ପାଖରେ ମ୍ୟୁନିସିପାଲ୍‌ଟିର ଡଷ୍ଟବିନ୍‌ଗୁଡିକ ଆସନ୍ନପ୍ରସବା ନାରୀ ଭଳି ଦୃଶ୍ୟମାନ। ଆଧୁନିକ ପରିପାଟିରେ ସଜ୍ଜିତା ଅନେକ ଯୁବତୀ ନିଜର ଶରୀରର ସୌନ୍ଦର୍ଯ୍ୟକୁ ସତେ ଯେପରି ବିଜ୍ଞପିତ କଲାଭଳି ପୋଷାକ ପିନ୍ଧିବାଟା ମଧ୍ୟ ଆଖିରେ ପଡିଲା।

ଏ ଭିଡ ଭିତରେ ମୋର ନଜର ହଠାତ୍ ଗୋଟିଏ ଯୁବତୀ ପାଖରେ ଅଟକିଗଲା। ଡଷ୍ଟବିନ୍‌ର ଅଇଁଠା ଡିସ୍‌ପୋଜେବଲ୍ ଥାଳିରୁ ଖାଇସାରି ଫିଙ୍ଗାଯାଇଥିବା ସିଙ୍ଗଡା, ବରା ଆଉ ରୋଲଗୁଡିକୁ କାଢି ଆଣି ଖାଉଥିବାର ଦୃଶ୍ୟ ମୋ ମନକୁ ଆନ୍ଦୋଳିତ କଲା। ମୁଁ ସେଇ ଅପରିଚ୍ଛନ୍ନ, ଛିଣ୍ଡାଲୁଗା ପିନ୍ଧା ଯୁବତୀକୁ ଦେଖି ବ୍ୟଥିତ ହେଲି। ନିଜ ଅଜାଣତରେ

ଯନ୍ତ୍ରବତ୍ ତା ଆଡକୁ ପାଦ ବଢାଇଲି – ଉଦ୍ଦେଶ୍ୟ ତାକୁ ବାରଣ କରିବି। ଆଉ ତା' ହାତରେ କିଛି ଟଙ୍କା ଦେଇ ପୁନଶ୍ଚ ମୁଁ ବସିଥିବା ଖାଲି ଚୌକିରେ ଆସି ବସିବି। ମାତ୍ର କେଇମିନିଟ୍ ପରେ ଡଷ୍ଟବିନ୍‌ରେ ପଡିଥିବା ଅଇଁଠା ଖାଦ୍ୟତକ ଖାଇସାରିବା ପରେ ସେ ମୋ ମୁହଁକୁ ସିଧା ଚାହିଁଲା। ମୁଁ ଶୁଣିପାରିଲି, ସେ ଅପରିଷ୍କାର ଅର୍ଦ୍ଧଉଲଗ୍ନ ଚିରାଫଟା ପରିପାଟୀରେ ସତେ ଯେମିତି ଦେଶର ସ୍ୱାଧୀନତାକୁ, ସଭ୍ୟସମାଜକୁ ଆଉ ମାନବିକତାକୁ ପରିହାସ କରୁଛି। ଯୌବନର ଦୀପ୍ତି ଅସ୍ତମିତ ହୋଇଥିବା କୁତ୍ସିତ ନାରୀଟିଏ ମୋ ସାମ୍ନାରେ ଦଣ୍ଡାୟମାନ। ଗୋଧୂଳି ସଞ୍ଜରେ ମଲ୍ ସାମ୍ନାରେ ଭୀଷଣଝଡ। ସତେ ଯେପରି ଉଣେଇଶହ ଅନେଶତ ମସିହାର ମହାବାତ୍ୟା ! କିନ୍ତୁ ଚଳଚଞ୍ଚଳ ମଲ୍ ସାମ୍ନାରେ ସଭ୍ୟ ସମାଜ ସତେ ଯେମିତି ଏ ବାତ୍ୟାର ସାମାନ୍ୟ ଆଭାସ ସୁଦ୍ଧା ପାଉନାହାନ୍ତି !

ଫଟାଲୁଗାର କାନି ତା ବକ୍ଷ ଉପରେ ପଡିଥିଲା। ପେଟଟା ଫୁଲିଥିଲା ଧୂସରବର୍ଣ୍ଣର ବେଲୁନ୍ ଭଳି। ଆଠ-ନଅମାସର ଗର୍ଭବତୀର ଭ୍ରମସୃଷ୍ଟି ହେଲା ମୋ ମନରେ। ମୁଁ ପୂର୍ବ ପରିକଳ୍ପନା ତଥା ମନସ୍ଥ କରିଥିବା ଇଚ୍ଛାରେ ତା' ହାତକୁ ପଚାଶଟଙ୍କିଆ ନୋଟ୍‌ଟିଏ ବଢାଇଦେଲି।

ସେ ମୋ ହାତରେ ଥିବା ଟଙ୍କା ପ୍ରତି ସାମାନ୍ୟତମ ଆସକ୍ତି ପ୍ରକାଶ କଲା ନାହିଁ। ପ୍ରାପ୍ତିର ଆଶା ଥିଲେ ମଣିଷ ଆକାଶପରି ଆଶା ଆଉ ସାଗରଭଳି ଅଭିଳାଷ ପଛରେ ଗୋଡାଏ। ଆଶାୟୀ ମନ ଆକୁଳ ହୋଇ ଅନ୍ୟର ଦୟାଆଡକୁ ହାତବଢାଏ। ଅଭିଳାଷ ପଛରେ ଗୋଡାଏ। ସେ ତା'ର ବଢିଲା ପେଟକୁ ମୋତେ ଦେଖାଇ କହିଲା, "ବାବୁ, ଆଜି ରାତିଟା ପାଇଁ ତୁମ ଟଙ୍କାରେ ମୋ ପେଟ ପୂରିଯିବ। କିନ୍ତୁ ଆସନ୍ତାକାଲି ମୋ ପେଟ ଆଉ ଏଇ ପେଟ ଭିତରର ଅନ୍ୟ ଏକ ପେଟ କଥା କିଏ ବୁଝିବ ? ମୁଁ ଯଦି ଅଇଁଠା ଖାଇବା ଅଭ୍ୟାସ ଛାଡିଦିଏ ତେବେ 'ଭିକାରୁଣୀ' ପାଲଟିଯିବି। ଚାକରାଣୀ କରି କେହି ମୋତେ ରଖୁନାହାନ୍ତି। ମୋ ପେଟ ଭିତରେ ନବଜାତକର ସୃଷ୍ଟି ଆଉ ସଂରଚନା ସାତମାସ ତଳେ ଏଇ ପାଖ ବସ୍ତିର ମଦୁଆ କଣ୍ଟ୍ରାକ୍ଟରର ଦୁଷ୍କର୍ମର ପରିଣତି। ମୁଁ ମୂଲିଆଣୀରୁ ଅଇଁଠାଖିଆ ବାୟାଣୀର ରୂପରେ ଆଜି ସମସ୍ତଙ୍କ ଆଗରେ ଠିଆ ହୋଇଛି।

ସେ ଅଧିକ କିଛି କହିବାକୁ ଚାହିଁଥିଲା। ମୁଁ ଚିନ୍ତାକଲି, ଭିକ୍ଷାବୃତ୍ତି ତ ନିଚ୍ଚକର୍ମ। ଗର୍ଭବତୀ ନାରୀ କେଉଁ କାମ ଅବା କରିପାରିବ ? ସମାଜରେ କେତେଜଣ ଅବିବେକୀ ପ୍ରାଣୀ ସଭ୍ୟତାକୁ ଏମିତି ନଷ୍ଟ କରି ଚାଲିଛନ୍ତି। ସେମାନେ ସମାଜକୁ ଆଣି ଏମିତି ଏକ ଦୋଛକିରେ ପହଞ୍ଚାଇଛନ୍ତି ଯେ, ତୁରନ୍ତ ଏଥିରୁ ନିସ୍ତାର ପାଇବା କଳ୍ପନାତୀତ। ସମାଜ ଅବା ଶାସନ ଏସବୁ ଦେଖି ମଧ୍ୟ କୁମ୍ଭକର୍ଣ୍ଣର ନିଦ୍ରାରେ !

ସେଇ ଅର୍ଦ୍ଧଉଲଗ୍ନ, ଭିକାରୁଣୀ ପରିପାଟୀରେ ନିଜକୁ ପାଗଳୀରୂପେ ଆତ୍ମଘୋଷିତ ଯୁବତୀକୁ ମୁଁ ବୁଝାଇଲା ଭଳି କହିଲି, 'ଦେଖ୍, କାଲିରକଥା କାଲି ଆସିଲେ ହିଁ ଦେଖାଯିବ। ଆଜି ମୁଁ ଯାହା ଦେଉଛି, ସେତକ ନେଇ ଯା, କିଛି ଖାଦ୍ୟ କିଣିଆଣି ଖାଇବୁ, ମୁଁ ଖୁସିହେବି। ତୁ କ'ଣ ମୋର ଏତିକି କଥା ରଖିବୁ ନାହିଁ?' ମୋର ଦାତାପଣିଆକୁ ଯୁବତୀଟି ହାତବଢାଇ ସାର୍ଥକ କଲା, ତା ପରର ଦୃଶ୍ୟ ମୋର ମନେ ନାହିଁ। ଭିଡ ଭିତରେ ସେ କେଇଟି ମୁହୂର୍ତ୍ତ ପରେ ଅଦୃଶ୍ୟ ହୋଇଗଲା। ମୁଁ ପ୍ରକୃତିସ୍ଥ ହେଲି, ସେ ଯାହା ସବୁ କହିଥିଲା ତାର ସାରାଂଶ, "ସେ ପାଗଳୀ କିମ୍ବା ଭିକାରୁଣୀ ନ ଥିଲା। ସେ ମୋ ପାଖରୁ ଟଙ୍କା ନେଇ ମୋତେ କୃତଜ୍ଞତା ଦେଇ ନଥିଲା, ବରଂ ମୁଁ ତା' ନିକଟରେ କୃତଜ୍ଞ ହେବାର ଥିଲା। ତା' ମୁହଁରେ ନା ଥିଲା ତୃପ୍ତିର ଝଲକ ନା ଥିଲା ଆନନ୍ଦର ଆଭା।"

ଠିକ୍ ଏମିତି ଭାବୁଥିବା ସମୟରେ ମୋର ମୋବାଇଲକୁ ଧର୍ମପତ୍ନୀଙ୍କ କଲ୍ଆସିଲା। ମୁଁ ଶାଢୀ ଦୋକାନ ଆଗକୁ ଗଲି, ସେ ପଚାରିଲେ, 'କୁଆଡେ ଅନ୍ତର୍ଦ୍ଧାନ ହୋଇଯାଇଥିଲ ?'

ମୁଁ ଚୁମ୍ବକରେ ଭୋକର କାହାଣୀ ତାଙ୍କୁ କହିଲି। ସେ ସ୍ମିତହସ ସହ କହିଲେ, 'ସମାଜରେ ଆଦର୍ଶ ସଂହତି ସ୍ଥାପନ ପାଇଁ ତୁମଭଳି ଦିଗବାରେଣୀ ବତୀଘର ସର୍ବଦା ଉଜ୍ଜ୍ୱଳ ଆଲୋକ ପ୍ରଦାନ କରୁଥାଉ। ସଂସ୍କାରାତ୍ମକ ଚେତନା ଯଦି ସମସ୍ତଙ୍କୁ ମାଡିବସେ, ତେବେ ଏ ଜନ୍ମରେ ସୁଦ୍ଧା ଆମେ ସତ୍ୟଯୁଗରେ ବଞ୍ଚିଛେ ବୋଲି କହିଲେ କିଛି ଭୁଲ୍ ହେବନାହିଁ।



# ଆଖି

ତିନିଦିନ ପାଇଁ ୟୁନିଭର୍ସିଟିରେ ଛୁଟିଘୋଷଣା କରିଛନ୍ତି କୁଳପତି । ଛାତ୍ର ଅଶାନ୍ତି ଯେଉଁ ରାଜ୍ୟରେ ଗୋଟିଏ ଦୈନନ୍ଦିନ ଘଟଣା ସେହି ରାଜ୍ୟର ନାମକରା ୟୁନିଭର୍ସିଟିରେ ମୁଁ ଜଣେ କାର୍ଯ୍ୟରତ କର୍ମଚାରୀ । ବିଶେଷ କାର୍ଯ୍ୟଭାର ଦୈନନ୍ଦିନ ମୋ ଉପରେ ପଡିଥାଏ । ତେଣୁ କେବଳ ରବିବାରକୁ ଛାଡି ଦେଲେ ଫୁରସତ୍ ମିଳେନାହିଁ । ଏବେ ତିନି ଦିନର "ସାଇନ-ଡାଏ" ଘୋଷଣା କରିଛନ୍ତି ଆମର କୁଳପତି ।

ପ୍ରଥମ ଦିନ ଘରେ ବସି ବସି ଅସ୍ତବ୍ୟସ୍ତ ଲାଗିଲା । ମୁଁ ରହୁଥିବା ସହରର ଆକାଶରେ ପ୍ରାୟାନ୍ଧକାର ବେଳାରେ ଚୁପଚାପ 'ଆଦିବାସୀ ମେଳା' ବୁଲି ବାହାରିଲି । ସାଙ୍ଗରେ ମୋର ସାନଝିଅ 'ଆଦ୍ୟାଶା' । ଦୁହେଁ ମେଳା ସାମ୍ନାରେ ଗୋଟିଏ ମଟରସାଇକେଲ ଷ୍ଟାଣ୍ଡରେ ଗାଡିଟିକୁ ସୁରକ୍ଷିତ ଭାବରେ ରଖି ମେଳା ଭିତରକୁ ପ୍ରବେଶକଲୁ । ମୋ ଆଖି ମେଳାର ବିଶାଳ ପସରା ଦେଖି କଳନା କରିନେଲା ଆଜି ଗୋଟାଏ ସନ୍ଧ୍ୟାରେ ସମଗ୍ର ମେଳା ପରିସର ବୁଲିବା ଅସମ୍ଭବ । ତେଣୁ ଯେତିକି ସମ୍ଭବ ସେତିକି ବୁଲିବାର ଅଭିପ୍ରାୟଟି ମନମଧ୍ୟରେ ଆସ୍ଥାନ ଜମାଇଲା ।

ମୋ ଝିଅର ଆଖି ଦୁଇଟି, କଥା କୁହା ଦୁଇଓଠ ଭଳି ଖାଲି ଜିଜ୍ଞାସାର ଜ୍ୟୋତିରେ ବିଚ୍ଛୁରିତ ହେଉଥାଏ । ଏଥିରେ ଆଶ୍ଚର୍ଯ୍ୟ ହେବାର କୌଣସି କାରଣ ହିଁ ନାହିଁ । କାରଣ ସେ ଦଶବର୍ଷର ଅପ୍ରାପ୍ତ ବୟସ୍କା ସାନ ଝିଅଟିଏ । ନୂଆ ନୂଆ ପ୍ରଥମଥର ପାଇଁ ସେ ମୋ ସହ ଏ ଆଦିବାସୀ ମେଳା ବୁଲିଆସିଛି । ମୁଁ ପ୍ରତିବର୍ଷ ନହେଲେ ମଧ୍ୟ ବିଗତ କେଇବର୍ଷ ଏଇ ମେଳାବୁଲାର ଅଭିଜ୍ଞତା ହାସଲ କରିଛି । ବିଭିନ୍ନ କିସମର ଘରୋଇ ଉପକରଣ ଏବଂ ବ୍ୟବହାର୍ଯ୍ୟ ଜିନିଷରେ ସଜା ହୋଇ ଖୋଲିଥିବା ଦୋକାନଗୁଡିକରେ ସୁନେଲି ଆଭାର ଆଲୋକମାଳା ଆଦିବାସୀ ମେଳାର ଆକର୍ଷଣକୁ ଦ୍ୱିଗୁଣିତ କରିବାରେ ସକ୍ଷମ । ପ୍ରଥମ ଧାଡିରେ ଆଦିବାସୀମାନଙ୍କ ଜୀବନଶୈଳୀକୁ ସହରର ଶିକ୍ଷିତ ତଥା ସମ୍ଭ୍ରାନ୍ତ ଜନସମୂହ ସହ ପରିଚିତ କରିବାର ପ୍ରୟାସ । ଚାଳ, ଖପର ବିଭିନ୍ନ କିସମର

ଝୋଟିରେ ସଜ୍ଜିତ ଘରଗୁଡିକ ଉପରେ ଜହ୍ନି, କଖାରୁ ଗଛ ଲଟାର ଆକର୍ଷଣୀୟ ଦୃଶ୍ୟପଟ ଭିତରେ ଆଦିବାସୀ ଦେବାଦେବୀଙ୍କ ସ୍ଥାପନା। ଘରଦ୍ୱାରର ପରିଷ୍କାର ପରିଛନ୍ନ ପରିବେଶ ଆଦିବାସୀ ସମାଜ ମଧ୍ୟ ଶୃଙ୍ଖଳିତ ଆଉ ସଭ୍ୟ ବୋଲି ମନରେ ଦୃଢଭାବ ଜାତହେଲା। ତାପରେ ମୁଁ ଏବଂ ଝିଅ ଆଦ୍ୟାଶା ଷ୍ଟଲଗୁଡିକ ବୁଲିଦେଖିବା ପାଇଁ ପାଦ ବଢାଇଲୁ।

ସରକାରୀ ଏବଂ ସ୍ୱୟଂ ସହାୟକ ଗୋଷ୍ଠୀର ଉତ୍ପାଦ ମଧ୍ୟରେ ଦାମୀ ଚିତ୍ରକଳା, କଂସାବାସନ, ଭଗବାନଙ୍କ ମୂର୍ତ୍ତିପ୍ରତିମା ତା'ସହ ବଡି, ପାମ୍ପଡ, ଡାଲି, ତେଲ, ମହୁ, ଝୁଣା ଇତ୍ୟାଦିର ଷ୍ଟଲଗୁଡିକରେ ନିୟୋଜିତ କର୍ମଚାରୀମାନଙ୍କ ମଧ୍ୟରେ ଅଧିକାଂଶ ମହିଳା। ସେମାନେ ସମସ୍ତେ ଜନଜାତି ସଂପ୍ରଦାୟର, ସେମାନଙ୍କ ଆଖିରେ ଆଖିଏ ଆଶା। ଦେଖଣାହାରୀମାନେ ଗ୍ରାହକ ପାଲଟିଯାଆନ୍ତୁ। ଭଲ ବ୍ୟବସାୟ ହେଲେ ସେମାନେ ଯେଉଁ ପରିଶ୍ରମ କରିଛନ୍ତି, ତା'ର ସଫଳତା ଉପଲବ୍ଧ ହେବ। ସହରର ମଧ୍ୟସ୍ଥଳରେ ଥିବା ନିର୍ଦ୍ଦିଷ୍ଟ ଏହି ପଡିଆଟିରେ ପ୍ରତିବର୍ଷ ଲାଗୁଥିବା ଏହି ମେଳାରେ ବିକ୍ରେତାମାନଙ୍କ ଆଶାରେ ପ୍ରଜ୍ୱଳିତ ଆଖିଗୁଡିକର ଭାଷା ଏବଂ ଭାବନାକୁ ମୁଁ ମୋ ଆଖିରେ ପଢିଆସୁଛି।

ମୁଁ ଏବଂ ମୋ ଝିଅ ଆଦ୍ୟାଶା ଗୋଟିଏ ଧାଡି ଦୋକାନ ବୁଲିସାରିବା ପରେ ଗୋଟିଏ ମୋଡରେ ଆସି ପହଞ୍ଚିଲୁ। ଆଖି ବୁଲାଇ ଆଣିଲି ବାମ ଏବଂ ଡାହାଣ ପାର୍ଶ୍ୱକୁ, ଦୋକାନଗୁଡିକ ଅଗଣନ ସାମଗ୍ରୀରେ ସଜାଇ ରଖି ଆମଦୁହିଁଙ୍କୁ ସତେ ଯେମିତି ସ୍ୱାଗତ କରୁଛନ୍ତି। ହଠାତ ମୋର ପାଦଦୁଇଟି ଅଟକିଗଲା। ମୋର ଗୋଡତଳେ, ପାଦଠାରୁ ମାତ୍ର ଦୁଇତିନି ଫୁଟ ବ୍ୟବଧାନରେ ଜଣେ ମଧ୍ୟବୟସ୍କା ଧୂସର ଏବଂ ସାମାନ୍ୟ ଲୋଚାକୋଚା ହୋଇଥିବା ଶାଢୀପିନ୍ଧି ବସିଛି। ମୋର ଧ୍ୟାନ କେନ୍ଦ୍ରସ୍ଥ ହେଲା ସେହି ମହିଳାଙ୍କ ପସରା ଉପରେ। ନା ସେ ଦାମୀ ଗୃହପୋକରଣର ସାମଗ୍ରୀ ଧରିଥିଲା ନା ସେ ଅନ୍ୟାନ୍ୟ ଦୋକାନୀଙ୍କ ଭଳି ଗୋଟିଏ ସୁସଜ୍ଜିତ ଷ୍ଟଲରେ ଚେୟାର ଉପରେ ବସି ବ୍ୟବସାୟ ପରିଚାଳନା କରୁଥିଲା। ସେ ତା ହାତରେ ଧରିଥିଲା କେବଳ ମୁଠାଏ ଖୁଚୁରା କଏନ। ନିଜେ ଚକାମୁଣ୍ଡି ମାରି ବସିଥିଲା ଏବଂ ସାମ୍ନାରେ ତା'ର ଗୋଲାକାର ମିଟର କଣ୍ଟାଯୁକ୍ତ ପ୍ଲାଷ୍ଟିକର ଓଜନ ମେସିନଟିଏ ପକାଇଥିଲା। ନା ଥିଲା ସେ ସମ୍ଭ୍ରାନ୍ତ ଶ୍ରେଣୀର, ନଥିଲା ସେ ମନରେ ଦରିଦ୍ର। ତା'ର ଆଖିଦୁଇଟିକୁ ମୁଁ ଲକ୍ଷ୍ୟ କଲି ସତେ ଯେମିତି ସେ ଦୁଇଟି ଆଖି ଥିଲା ଗୋଟିଏ ନାରୀର, ଦୁଇଟି ଚମତ୍କାର ଈଶ୍ୱରୀୟ ବାର୍ତ୍ତାବହ ଓଠ। ସେ ଆଖିର ପତା ଦୁଇଟି ନିବୁଜ ରଖି ଗ୍ରାହକଙ୍କ ଉଦ୍ଦେଶ୍ୟରେ କହୁଥିଲା – "ଆଜ୍ଞା, ମାତ୍ର ତିନିଟଙ୍କା ଦିଅନ୍ତୁ, ନିଜର ଓଜନ ମାପି ନିଅନ୍ତୁ!"

ପାଦଦୁଇଟି ମୋର ସ୍ଥିର ହୋଇଗଲା। ମୁଁ ଅନୁଭବ କଲି ଏଇ ନାରୀଜଣକ ସତେ ଯେମିତି ମୋର ସ୍ୱାସ୍ଥ୍ୟ ସଚେତନତା ନିମିତ୍ତ ତା'ର ପସରା ମେଲିଛି। ତା'ର କରୁଣ ଆଖିରପତା ସେମିତି ନିବୁଜଥିଲା। ମୁଁ ଝିଅକୁ ପାଖକୁ ଆଣିଲି। ଦୁହେଁ ନିଜ ନିଜର ଓଜନ ମାପିବା ପାଇଁ ଯାଇ ପ୍ରଥମେ ମେସିନ ଉପରେ ପ୍ରଥମେ ପାଦଦୁଇଟି ରଖି ଠିଆହେଲୁ। ମେଳାର ଦୋଛକି ଗଳିରେ ତା'ର ମେସିନ ଉପରେ କ୍ଷୀଣ ଆଲୋକରଶ୍ମି ପଡୁଥିବାରୁ ମୁଁ ମିଟର କଣ୍ଟାଟିକୁ ପଢିବାକୁ ଚାହିଁଲେ ମଧ୍ୟ ଅସ୍ପଷ୍ଟ ଦେଖାଗଲା। ତେଣୁ ମୁଁ ସେହି ମଧ୍ୟ ବୟସ୍କା ମହିଳାକୁ ପଚାରିଲି, "କହିଲ ମାଉସୀ ମୋର ଓଜନ କେତେ ?"

ସେ ଏଥର ତା'ର ଅଧାଓଢଣୀ ତଳେ ଲୁଚାଇ ରଖିଥିବା ମୁହଁକୁ ମୋ ଆଡକୁ କଲା। ତା'ର ଆଖିର ପତା ସତେ ଯେମିତି ନିବୁଜ ଥାଏ। ମୋତେ କ୍ଷୀଣସ୍ୱରରେ କହିଲା, "ମୁଁ ଅନ୍ଧୁଣୀ ! ବାବୁ, ମୋ ଆଖିକୁ ଦେଖାଯାଏ ନାହିଁ। ତୁମେ ନିଜେ ଦେଖିନିଅ ବାବୁ !" ମୁଁ ମୋର ଝିଅକୁ କହିଲି, "ଦେଖିଲୁ ମା' ! ମୋର ଓଜନ କେତେ ?" ଝିଅ ମୋର ସୂଚନା ଦେଲା ୫୫ କେଜି। ମୁଁ ଲକ୍ଷ୍ୟ କରିଥିଲି ଯେ, ଏ ଅନ୍ଧୁଣୀ ମହିଳାଙ୍କ ପସରା ପାଖରେ ତୁଳନାତ୍ମକ ଭାବରେ ଗ୍ରାହକଙ୍କ ସଂଖ୍ୟା ଅତି ଗୌଣ।

ମୁଁ ବାସକରୁଥିବା ସହରର ସଭ୍ୟସମାଜ ମେଳା ପରିଦର୍ଶନ ପାଇଁ ଆସିଥିଲେ ସତ, କିନ୍ତୁ ନିଜ ବୟସ ତୁଳନାରେ ଓଜନ କେତେ ରହିବା କଥା ସେଥିପ୍ରତି ଏତେଟା ସଚେତନ ନଥିଲେ । ବରଂ ସମସ୍ତେ ବସ୍ତୁବାଦୀ ହୋଇ ପକେଟ୍‌ରୁ ଶହ ଶହ ଟଙ୍କା ଖର୍ଚ୍ଚକରି ମେଳା ଶେଷରେ ସାତ-ଆଠ କୋଟି ଟଙ୍କାର ବ୍ୟାପାରର ପରିସଂଖ୍ୟାନରେ ଭାଗିଦାରୀ ହେବାପାଇଁ ବ୍ୟସ୍ତ ଥିଲେ। ବହୁତ୍ କମ୍‌ବ୍ୟକ୍ତି ଅନ୍ଧୁଣୀର ହାତପାପୁଲିରେ କଏନ୍‌ଦେଇ ନିଜର ଓଜନ ମାପୁଥିଲେ।

ମୁଁ ସ୍ୱତଃପ୍ରବୃତ୍ତ ଭାବରେ ମାଉସୀ ବୋଲି ସମ୍ବୋଧନ କରିଥିବା ସେହି ଅନ୍ଧୁଣୀ ମହିଳାଙ୍କ କାନପାଖରେ ପଚାରିଲି, "ମାଉସୀ, ତୁମେ ଏ ମେଳାକୁ ପ୍ରତିବର୍ଷ ଆସ, ନା ଏ ବର୍ଷ କେବଳ ପ୍ରଥମଥର ପାଇଁ ଆସିଛ ? କାହିଁ ମୁଁ ତୁମକୁ ପୂର୍ବବର୍ଷମାନଙ୍କରେ କେବେ ଦେଖିନାହିଁ ? ତୁମେ ଅନ୍ଧୁଣୀ ହୋଇ ମଧ୍ୟ..... ?" ମୋ ପ୍ରଶ୍ନିଳ କଥାରେ ହଠାତ୍ ବାଧାଦେଇ ମୋର ଜିଜ୍ଞାସାର ଉତ୍ତର ଆରମ୍ଭକଲା – "ମୋର ଏ ଚର୍ମଚକ୍ଷୁ ଦୁଇଟି ନାହିଁ ସତ ବାବୁ। କିନ୍ତୁ ଏ ଦୁନିଆକୁ ମୁଁ ଠିକ୍ ଅନୁଭବ କରିଛି। ଏଠି ସମସ୍ତେ ନିଜ ନିଜ ପରିଶ୍ରମ ପ୍ରତିବଦଳରେ କିଛି ଉପାର୍ଜନ କରି ଏକ ସୁସ୍ଥସବଳ ପରିବେଶ ଗଢିବାପାଇଁ ସର୍ବଦା ପ୍ରଚେଷ୍ଟାରତ। ମୋର ଛୋଟ ପରିବାରଟିଏ ଅଛି, ମୋର ସ୍ୱାମୀ

ସ୍ୱଳ୍ପଶିକ୍ଷିତ, ସେ ନିଜ ଚେଷ୍ଟାରେ ଗୋଟିଏ ମ୍ୟାଗାଜିନ୍ ଷ୍ଟଲ ଖୋଲିଛନ୍ତି। ଦୁଇଟି ସନ୍ତାନର ଜନନୀ ହେବା ପରେ ସ୍ଥିରକଲି ସମୟ ନଷ୍ଟକରି କାହିଁକି ବସି ରହିବି? ସହଜରେ ତ ଜନ୍ମରୁ ମୋତେ ଈଶ୍ୱର ଦୁଇଟି ଚର୍ମଚକ୍ଷୁ ଦେଇନାହାନ୍ତି। କିନ୍ତୁ ବାକ୍‌ଶକ୍ତି ସହ ଗୋଡହାତ ତ ଚାଲୁଛି। ତେଣୁ ଏ ମେଳାକୁ ମୁଁ ଏଠାରେ ଆୟୋଜକ ବଡବାବୁଙ୍କୁ କହିପୋଛି, ଅନୁରୋଧ କରି ଏ ଛକମୋଡାଣିରେ ଖାଲିସ୍ଥାନ ବାଛି ବସିଯାଏ। ଏଇ ତିନି-ଚାରି ବର୍ଷ ହେବ ମୁଁ ବିଶେଷ ଅଧିକ କିଛି ମେଳାରୁ ରୋଜଗାର ନକଲେ ମଧ ଘରର ଦୈନନ୍ଦିନ ଖର୍ଚ୍ଚ, ପିଲାଙ୍କ ଖାତା-କଲମ ଖର୍ଚ୍ଚ ବାବଦରେ ମୋ ସ୍ୱାମୀଙ୍କୁ ସାହାଯ୍ୟ କରିପାରୁଛି। କିନ୍ତୁ ଏ ସହରର ମେଳାମଉଛବ ଏ ପଡିଆ ନହେଲେ ଅନ୍ୟ କେଉଁ ପଡିଆରେ ବର୍ଷତମାମ ଲାଗିରହୁଛି। ତେଣୁ ମୁଁ ବେକାର ହୋଇ ଘରେ ନବସି ମୋର ସମୟର ସଦୁପଯୋଗ କରୁଛି। ବାପା-ମା' ମୋତେ ଅନ୍ଧ-ମୂକ ବିଦ୍ୟାଳୟରେ ପଢାଇଥିଲେ ହୁଏତ ମୁଁ ଆଜି ଅନ୍ୟକିଛି ପନ୍ଥା ଧରିଥାନ୍ତି। କିନ୍ତୁ ଦଇବ ମୋତେ ଏଇକାର୍ଯ୍ୟ ପାଇଁ ପ୍ରେରଣା ଦେଇଛି। ତେଣୁ ମୁଁ ମୋର ବୃତ୍ତିରେ ମୋର ଆଗାମୀ ଭବିଷ୍ୟତର ଗୋଟିଏ ସୁରକ୍ଷିତ ସ୍ୱପ୍ନକୁ ସାକାର କରିବାର ପରିକଳ୍ପନା କରିଛି।"

ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, "ଆଗାମୀ ଦିନର ସ୍ୱପ୍ନ, ସେ ପୁଣି କ'ଣ?" ମୋର ପ୍ରଶ୍ନର ଅସଲ ଅନ୍ତର୍ନିହିତ ଉଦ୍ଦେଶ୍ୟଟି ଥିଲା ଗୋଟିଏ ଅନ୍ଧୁଣୀର ପୁଣି କ'ଣ ସ୍ୱପ୍ନ ହୋଇପାରେ? କେବଳ ଉଚ୍ଚଶିକ୍ଷିତ ଅବା ମଧ୍ୟବିତ୍ତମାନେ ଭବିଷ୍ୟତର ସୁନେଲିସ୍ୱପ୍ନକୁ ସାକାର କରିବା ପାଇଁ ଅହରହ ପ୍ରଚେଷ୍ଟାରେ ରହିଥାନ୍ତି। କିଏ କୋଠା ଗଢିବ ତ କିଏ ରାଜନୀତିରେ ଟିକଟ ପାଇ ନେତା ଏମ୍‌ଏଲ୍‌ଏ ହେବ ତ କିଏ ଡାକ୍ତର, ଇଞ୍ଜିନିୟର ହେବ। କିନ୍ତୁ ଆଖିକୁ ଦେଖାଯାଉ ନଥିବା ଅନ୍ଧୁଣୀର ପୁଣି କେଉଁ ସ୍ୱପ୍ନ? ମୋର ଭାବନାର ଅନ୍ତ ହେଲା। ସମ୍ପୂର୍ଣ୍ଣ ବର୍ଣ୍ଣନାଶୈଳୀର ସଂକ୍ଷିପ୍ତ ଉତ୍ତରରେ- ଅନ୍ଧୁଣୀ ମୋତେ ତା'ର ତୃତୀୟ ନେତ୍ରରେ କହିଲା, "ବାବୁ! ମୁଁ ପରା ଦୁଇ ଦୁଇ ସନ୍ତାନର ଜନନୀ। ତୁମେ ମା'ଟିଏ ହୋଇଥିଲେ ମୋ ମନକଥା ବୁଝିପାରନ୍ତ! ମୋ ସ୍ୱପ୍ନକୁ ମଧ ହୃଦୟଙ୍ଗମ କରିପାରିଥାନ୍ତ।"

ଅନ୍ଧୁଣୀ ନାରୀଟିର ଏଇ କେତୋଟି ବାକ୍ୟରେ ମୁଁ ମୋର ନିର୍ବୋଧତା ପାଇଁ ମନେମନେ ଲଜ୍ଜିତହେଲି। ମୁଁ ପିତୃତ୍ୱର ଆସନ ଅଳଙ୍କୃତ କରିଥିଲେ ମଧ ଆକାଶ ଭଳି ଶୂନ୍ୟତାର ଭିତ୍ତିଭୂମିରେ ଠିଆ ହୋଇଥିଲି, ଆଉ ସେ ପାଦତଳେ ପୃଥିବୀର ସମସ୍ତ ଅକଳ୍ପନୀୟ ଓଜନରେ ତା'ର ଆଶା, ଆକାଂକ୍ଷା ଏବଂ ମାତୃତ୍ୱର ହୃଦୟକୁ ଚାପିଧରି ପୁନର୍ବାର ମୋତେ 'ଜ୍ଞାନଚକ୍ଷୁଧାରିଣୀ'ର ପରିଚୟ ଦେଲା।

ମୁଁ ସମଗ୍ର ମେଳା ପରିଦର୍ଶନ ନକରିଥିଲେ ମଧ୍ୟ ବିଶାଳ ପୃଥିବୀ ମା'ର ପରିଚୟ ଏବଂ ପରିଭ୍ରମଣ କରିସାରିଥିଲି। ଝିଅ ଆଦ୍ୟାଶାକୁ ଧରି ମେଳାବୁଲାର ଔପଚାରିକତା ଶେଷକରିବା ପୂର୍ବରୁ ମୁଁ ତା' ହାତରେ କଏନ୍ ବଦଳରେ ପକେଟ୍‌ରେ ଥିବା ଏକ ଶହେ ଟଙ୍କାର ନୋଟ୍‌ଟିଏ ଧରାଇଦେଲି। ସେ ମୋତେ ଖୁଚୁରା ନାହିଁ ବୋଲି କହିବା ପୂର୍ବରୁ ମୁଁ ଝିଅକୁ ଧରି ଉଭାନ୍ ହୋଇଗଲି। ଅବଶ୍ୟ ଝିଅର ଅଝଟପଣିଆକୁ ସମ୍ମାନଦେଇ ଆଦିବାସୀଙ୍କ ହାତ ତିଆରି ମା' ଦୁର୍ଗାଙ୍କର ମାଟିର ମୂର୍ତ୍ତିଟିଏ କିଣିଆଣି ମୁଁ ଝିଅ ହାତରେ ଧରାଇଥିଲି। ତା' ଆଖିରେ ଆଖିଏ ଖୁସିର ଝଲକ ସହ ମୁଁ ଷ୍ଟାଣ୍ଡ ଆଡକୁ ମୁହାଁଇଲି, ଉଦ୍ଦେଶ୍ୟ ବସାକୁ ଫେରିବି।



# ଧ୍ରୁବସତ୍ୟ ଓ ଅଦିନିଆ ବଉଳ

ବାପା କଳାକାର ଥିଲେ। ନିଛକ ଅଭିନୟ ପ୍ରତିଭା ସଂପନ୍ନ ଯିଏ ତାଙ୍କ ଅଭିନୟ ପ୍ରତିଭାକୁ ରଙ୍ଗମଞ୍ଚରେ ଅବା ଚଳଚ୍ଚିତ୍ରରେ ଦେଖିଛନ୍ତି ଗୋଟିଏ କଥା ନିଶ୍ଚିତ କହୁଥିଲେ ଓ କହୁଛନ୍ତି ଯେ, ତାଙ୍କର ଅଭିନୟରେ ଦିଆଯାଇଥିବା ଚରିତ୍ରଟି ଏଭଳି ନିଖୁଣ ଅଭିନୟରେ ଭରପୁରଥିଲା ଯେ ଆମେ ଅଭିନୟ ଦେଖିବା ସମୟରେ ବାପାଙ୍କୁ ଭୁଲିଯାଉଥିଲୁ। "ଭାଗବତ ବାବୁ" ମୁହଁରେ ରଙ୍ଗ ଲେପି ବେଶ ପୋଷାକ ବଦଳାଇ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇଛନ୍ତି, ଏହି ଧାରଣାରୁ ବହୁକୋଶ ଦୂରଇଲାକାର ଦର୍ଶକମାନେ ବୋଧହୁଏ ନାଟକ ବିଷୟବସ୍ତୁର ଆତ୍ମବିଭୋର ଦର୍ଶକ ସାଜିଲେ ଏହାହିଁ ତ ପରିଣାମ ହୋଇଥାଏ। କେବଳ ସଦିଚ୍ଛାପୂର୍ଣ୍ଣ ପ୍ରଶଂସା ହିଁ ମିଳେ।

ବାପା ଜୀବନ ତମାମ କଳାପ୍ରତି ସମର୍ପିତ ଥିଲେ "ଏହା ସତ୍ୟ"। ସେ ରୋକ୍‌ଠୋକ୍ ମୁହଁରେ ଭଲମନ୍ଦର ବିଚାର ନିଜର ହୃଦୟ ଭିତରୁ ଶବ୍ଦର ସାହାଯ୍ୟ ନେଇ ସମ୍ମୁଖରେ ଥିବା ବ୍ୟକ୍ତି ବିଶେଷଙ୍କ ସହ କଥା ହୁଅନ୍ତି, ଭାବର ଆଦାନ ପ୍ରଦାନ କରନ୍ତି, ଏହା ସତ୍ୟ। ଯେଉଁ ସୀମିତ ଆୟରେ ସେ ଓଡିଶାରେ ରହି କେବଳ ଜୀବନ ସଂଗ୍ରାମ କରୁଥିଲେ ସେଥିରେ ବର୍ତ୍ତମାନ ଓ ଅତୀତରେ ଦିନକୁ ଦିନ ମହଙ୍ଗା ମାଡରେ ଚଳୁଥିବା ଜନସାଧାରଣଙ୍କ ଭିତରେ ସେ ଥିଲେ ଜଣେ ସଂଗ୍ରାମରତ ସାଧାରଣ ମଣିଷ, କିନ୍ତୁ ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ।

ସମୟ ମଣିଷକୁ ନଚାଏ। କାଳର ବଶ ଏ ଜଗତ। "ସମୟ" କେତେବେଳେ ମଣିଷକୁ ସବୁ ସଫଳତା ହାତ ପାହାନ୍ତାରେ ଦିଏ ତ କେତେବେଳେ କିଛି ନଦେଇ ସେମିତି ଏକାଏକା ନିଜର ଚଲାପଥରେ ଚାଲିବାକୁ ବାଧ୍ୟ କରାଏ। ଏହା ମଧ୍ୟ ସତ୍ୟ ଯେ, ଭଲକର୍ମର ଫଳ ଭଲ ଆଉ ମନ୍ଦ କର୍ମର ଫଳ ମନ୍ଦ। ବାପା ଯେଉଁ ହାତକୁ ଏବଂ ଯେଉଁ ଶରୀରର ଭିନ୍ନଭିନ୍ନ ଅଙ୍ଗକୁ ନେଇ ମଞ୍ଚନାଟକ ଅବା ଚଳଚ୍ଚିତ୍ରରେ ଅଭିନୟର ପ୍ରତିଭା ନିଜର ସୁଲଳିତ ସ୍ୱରର ବ୍ୟବହାର କରି ଦେଖାଇ ଅନେକ ପୁରସ୍କାର, ସମ୍ବର୍ଦ୍ଧନା ଅବା ସମ୍ମାନ ପାଇଥିଲେ, ସେହି ଶରୀର ଆଉ ମନ ଭିତରେ ଅନ୍ୟ ଏକ ଆଦରଣୀୟ

ଚିନ୍ତାଧାରା ଅହରହ ଥିଲା, ତାହା ହେଲା ସେ ବୃକ୍ଷଲତା ବା ପ୍ରକୃତିପ୍ରେମୀ ମଧ୍ୟ ଥିଲେ। ଆମ ଘରେ ଥିବା ବାଡିରେ ସେ ଜାତିଜାତିକା ଫୁଲଗଛ ଋତୁ ଅନୁସାରେ ଲଗାନ୍ତି, ତାହା ଗୋଟିଏ ପାର୍କର ଭ୍ରମ ସୃଷ୍ଟି କରେ, ବଗିଚା ଭଳି ଲାଗେ।

ଗେଣ୍ଡୁ, ମଲ୍ଲୀ, ଭିନ୍ନଭିନ୍ନ ରଙ୍ଗ ଓ କିସମର ଗୋଲାପ ପୁଣି ମନ୍ଦାରଗଛ ସହ ଅଶୋକ ଆଉ ଚମ୍ପାଗଛ ତ ସେ ଲଗାଉଥିଲେ, ତା ସହ ଆମ୍ବ, ପଣସ, ବେଲ ସହ ସଜନା ଗଛ ଏବଂ ଅମୃତଭଣ୍ଡା ଭଳି ପନିପରିବା ଗଛ ମଧ୍ୟ ଲଗାଉଥିଲେ। ଏହା ସତ୍ୟ ଯେ, ବୟସ, ମଣିଷକୁ ବାଲ୍ୟାବସ୍ଥା, ଯୁବାବସ୍ଥା ଓ ବୃଦ୍ଧାବସ୍ଥା ଭଳି ତିନୋଟି ସୋପାନ ଭିତର ଦେଇ ଗତିକରାଏ। ଏହା ମଧ୍ୟ ଧ୍ରୁବସତ୍ୟ ଯେ, ମଣିଷ ନିଜନିଜର ଅଭିନୟ ସାରି ଶେଷରେ ଏ ଧରାପୃଷ୍ଠର ରଙ୍ଗମଞ୍ଚରୁ ସବୁଦିନ ପାଇଁ ବିଦାୟ ନିଏ।

ଋତୁ, ଭଗବାନଙ୍କ ସୃଷ୍ଟିର ଏକ ସୁନ୍ଦର ଅବଦାନ। ଗୋଟିଏ ଋତୁ ଶୀତର ସୁନ୍ଦର ମାୟାରେ କିଛିଦିନ ରଖିଥାଏତ ଅନ୍ୟ ଏକ ଋତୁ ଗ୍ରୀଷ୍ମ ମଣିଷକୁ ଅସହ୍ୟ ଗରମ ଅନୁଭୂତି ଦେଇ ବ୍ୟତିବ୍ୟସ୍ତ କରିପକାଏ। ଋତୁ ପରିବର୍ତ୍ତନରେ ବର୍ଷାର ମହତ୍ତ୍ୱ କମ୍ ନୁହେଁ। ଏହା ସତ୍ୟ ଯେ, ଜୀବନପାଇଁ 'ଜଳ' ଅତ୍ୟାବଶ୍ୟକ ଓ ଜଳବିନା ଏ ଜଗତ ନିର୍ଜୀବ ସ୍ଥାଣୁର ପଟ୍ଟଚିତ୍ରଟିଏ କେବଳ। ବାପାଙ୍କ ଏ ନିଆରା ସଉକ ଗଛଲଗାଇବା ଓ ଯତ୍ନନେବା ବେଶୀ ବଢିଲା ଯେତେବେଳେ, ବାପା ନିଜେ ଚାରିଗୁଣ୍ଠ ଜାଗା କିଣି ସହରର ଗୋଟିଏ ସ୍ୱଳ୍ପ ଚଳପ୍ରଚଳ ଏବଂ ବ୍ୟସ୍ତମୟ ଇଲାକାରେ ଚାରି ବଖରା ଘରତିଆରି କରି ଆମ ପରିବାରକୁ ଆଣି ରଖିଲେ।

ମୁଁ ହାଇସ୍କୁଲରେ ପଢୁଥିଲି। ମୁଁ ଘରେ କୋଡପୋଛା କନିଷ୍ଠ ପୁଅ। ଉପରେ ଦୁଇଭାଇ ଓ ଗୋଟିଏ ଭଉଣୀ।

ନୂଆଘର, ନୂଆ ଇଲାକା କିନ୍ତୁ ସେଇ ପୁରୁଣା ସହର। ମୁଁ ନୂଆ ନୂଆ ଏ ନୂଆଘରେ ରହିବା ପରେ ସଂପୂର୍ଣ୍ଣ ଏକାକୀ ବୋଲି ନିଜକୁ ଆବିଷ୍କାର କଲି। କେବଳ ବାପା ମା ଓ ଜଣେ ଭାଇ ସହ ପ୍ରାୟସମୟ ଘରେ ବିତୁଥିଲା। ନା ଥିଲେ ମୋ ସହ ଖେଳିବାକୁ ନୂଆ ସାଙ୍ଗ ନା ଥିଲେ ମୋର ପୁରୁଣା ସାଙ୍ଗ। ତେଣୁ ବାପା ଯେବେବି ବଜାର ଯାଆନ୍ତି ଅବା ନିଜର ଅଭିନୟ କାମରେ ଅନ୍ୟ ସହର ଅବା ଗ୍ରାମକୁ ଯାଆନ୍ତି ଫେରିବା ସମୟରେ ଗୋଟିଏ ଗୋଟିଏ ପ୍ରଜାତିର ନୂଆକିସମର ଗଛକୁ ସଯତ୍ନେ ଆଣିଥାନ୍ତି। ଗଛଆଣିବା ପରେ କେବଳ ମୋତେ ହିଁ ସେ ଡାକିଥାନ୍ତି; ଉଦ୍ଦେଶ୍ୟ ମୁଁ ପାଣି, ଶାବଳ, ଖୁଣ୍ଟୁଣୀ ଧରି ଆସିଲେ ସେ ଆମଘରେ ଥିବା ବଗିଚାଟିରେ ଉପଯୁକ୍ତ ସ୍ଥାନଟିଏ ବାଛି ସେଠାରେ ଇଷ୍ଟଦେବଙ୍କୁ ସ୍ମରଣ କରି ଗଛଟିକୁ ଲଗାଇବେ। ଗଛ

ଲଗାଇବା ପରେ ମୋତେ କହିଥାନ୍ତି, "ମୁଁ ଯେବେ ମୋର କାମରେ ବାହାରକୁ ଯିବି ପାଣି ଗଛରେ ଦେଇପାରିବି ନାହିଁ କିମ୍ବା ଅନାବନା ଗଛକୁ ଏ ଗଛମୂଳେ ଚାରିପଟରୁ ଉପାଡି ପାରିବି ନାହିଁ, ତୁ ତୋର ସ୍କୁଲପଢା ସମୟବାଦ ଯେତେବେଳେ ବି ଫୁରସତ ପାଇବୁ ଗଛଟିର ଯତ୍ନନେବୁ। ପାଣି ଟିକେଟିକେ ଦେଉଥିବୁ।"

ମୁଁ ମୁଣ୍ଡ ଟୁଙ୍ଗାରୀ ହଁ କରେ। ମୋର ମା ନିଜକୁ ଘରକାମ ରୋଷେଇବାସରୁ ଯେତେବେଳେ ଫୁରସତ ପାଆନ୍ତି ନିଜେ ଲଗାଇଥିବା ତୁଳସୀ ଚଉରାଟିର ଯତ୍ନନିଅନ୍ତି। ପର୍ବପର୍ବାଣି ଯାନିଯାତ୍ରାରେ ତୁଳସୀ ଚଉରା ମୂଳରେ ଝୋଟି ଦେବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ଅବୟବକୁ ସୁନ୍ଦରଭାବରେ ରଙ୍ଗୀନକରି ଆଙ୍କିବା କାର୍ଯ୍ୟଟି ମୋ ମା'ଙ୍କର ପୋଖତ ଓଡିଆଣୀର ପରିଚୟ ଦିଏ। ଘରେ ଥିବା ପ୍ରବେଶ ପଥରେ ବାମପାର୍ଶ୍ୱ, ଘରୁ ବାହାରିବା ଦ୍ୱାରର ଡାହାଣ ପାର୍ଶ୍ୱରେ ତୁଳସୀ ଚଉଁରାଟି ବେଶ ସଜ୍ଜିତ, ପରିଷ୍କାର ରହେ। ବାପାଙ୍କୁ ଦିନେ ପୁରୀରୁ ଡକରା ଆସିଲା। ପୁରୀର ଗୋଟିଏ ଅନୁଷ୍ଠାନ ପ୍ରାୟ 'ରଥଯାତ୍ରା' ଭଳି ପବିତ୍ର ଅବସରରେ ନିଜର କଳାକାରଙ୍କୁ ନେଇ ସାତଦିନଧରି ନାଟକ ମହୋତ୍ସବ ପାଳନ କରିଥାନ୍ତି। ବାପା ସେହି ନାଟକରେ ଅଭିନୟ ପ୍ରତ୍ୟେକବର୍ଷ ଯାଇ କରିଥାନ୍ତି। ସେ ପ୍ରତିବର୍ଷଭଳି ଉତ୍ସାହର ସହ ଶ୍ରୀକ୍ଷେତ୍ର ପୁରୀ ଗଲେ। ତାଙ୍କର ପୁରୀ ରହଣୀର ସାତଦିନ କେବଳ ରଙ୍ଗମଞ୍ଚରେ ନାଟକ ଅଭିନୟରେ କାଟୁନଥିଲେ। ଶ୍ରୀଜଗନ୍ନାଥଙ୍କୁ ଭକ୍ତିକରିବା ପରଂବ୍ରହ୍ମଙ୍କୁ ରତ୍ନସିଂହାସନରେ ଦେଖିବାର ସୁଯୋଗକୁ ସେ ନାଟକ ଅଭିନୟ ଯୋଗୁଁ ପ୍ରତିବର୍ଷ ପାଆନ୍ତି ବୋଲି ତାଙ୍କର ଏକ ଅତୁଟ ବିଶ୍ୱାସ ଥିଲା।

ସେ ବର୍ଷ ଭୀଷଣ ଗରମ ସାଙ୍ଗକୁ ଗୁଳୁଗୁଳିର ଆଷାଢ଼ ମାସ ଓଡିଶାରେ ଅନୁଭୂତ ହୋଇଥିଲା। ବାପା ପୁରୀରୁ ସାତଦିନପରେ ଫେରିଲେ। ଫେରିବା ସମୟରେ ଗୋଟିଏ ପଲିଥିନରେ ମାଟି ସହ ଆମ୍ବଗଛର ଚାରାଟିଏ ଅନ୍ୟାନ୍ୟ ଭୋଗରାଗ ସହ ଧରି ଘରେ ପହଞ୍ଚିଲେ।

ମା' ଆମ୍ବଗଛଟିକୁ ଦେଖି ପଚାରିଥିଲେ, "ଆଉ କ'ଣ ଆମ ସହରରେ ଆମ୍ବଗଛ ଚାରା ମିଳିଲା ନାହିଁ ଯେ, ପୁରୀରୁ ଆମ୍ବଗଛ ଚାରାଟିକୁ ଧରିଆସିଛ ?"

ମା'ଙ୍କ କଥାଶୁଣି ବାପା ହସିହସି ଉତ୍ତର ଦେଇଥିଲେ, ଏ ଚାରା ଏମିତି ସେମିତି ସ୍ଥାନରୁ ଆସିନାହିଁମ ! ଶ୍ରୀକ୍ଷେତ୍ର ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଆମ ବଡଠାକୁରଙ୍କ ବିଜେସ୍ଥଳୀ ପୁରୀରୁ ଆସିଛି। ଏ ଗଛକୁ ସାମାନ୍ୟ ମନେ କରିବ ନାହିଁ, ହେୟଜ୍ଞାନରେ ଏ ଗଛକୁ ଦେଖିବ ନାହିଁ। ଦେଖିବ ଦିନେ ଏହି ଗଛରୁ ଯେଉଁ ଫଳପାଇବା ଓ ତାକୁ ଚାଖିବା ତାହା ଗୁଡମିଠା ଭଳି ଲାଗିବ।

ବୋଧହୁଏ ଆମ୍ବଟିର ଚାରା, ବାପାଙ୍କର ଅନାବିଳ ବୃକ୍ଷ ପ୍ରେମକୁ ଓ ତାଙ୍କର ମନର କଥାକୁ ଶୁଣିପାରିଥିଲା ଓ ବୁଝିପାରିଥିଲା। ସତକୁସତ ବାପାଙ୍କର ମୁଖନିଃସୃତ ପ୍ରତ୍ୟେକ କଥା ତିନିବର୍ଷପରେ ସତ୍ୟରେ ପରିଣତ ହେଲା।

ବାପା ଓ ମୁଁ ଗଛଟିକୁ ଆମ ନିଜଘର (ଗେଟ୍) ପ୍ରବେଶପଥର ବାମପାର୍ଶ୍ୱରେ ପାଚେରୀର ଭିତରରେ ଖୋଲାସ୍ଥାନଟିରେ ପୋତି ପ୍ରତ୍ୟେକ ଦିନ ପାଣିଦେବାଠାରୁ ଗୋବର ଖତ ପର୍ଯ୍ୟନ୍ତ ସବୁଦେଇ ଯତ୍ନନେଇଥିଲୁ।

ଆମ୍ବ ଗଛଟି ବାପାଙ୍କର ବାସ୍ତବ ଜୀବନାଭିନୟର ଗୋଟିଏ ଅଂଶଥିଲା। ଜୀବନ୍ତ ଛନଛନ ସବୁଜ ବହଳ ପତ୍ରମେଳରେ ଛୋଟଛୋଟ ତାରାଭଳି ବଉଳ ଗ୍ରୀଷ୍ମଋତୁର ପ୍ରାରମ୍ଭର ବହୁ ପୂର୍ବରୁ ଖୁନ୍ଦିହୋଇ ଗଛଟିରେ ଶୋଭାପାଏ। ବଉଳଫୁଲର ବାସ୍ନାରେ ଚଉଦିଗ ମହକିଉଠେ। ବଉଳ ଅମାବାସ୍ୟାରେ ସାଇପଡିଶାର ମା-ଭଉଣୀମାନେ ଆସି ବଉଳପେନ୍ଥାଏ ନେଇଯାଇଥାନ୍ତି। ମୁଁ ଓ ବାପା ଉଭୟେ ଦେଖୁ ଯେହେତୁ ଆମର ପରମ୍ପରା ଓ ଆବେଗ ସହ ବଉଳ ଫୁଲର ସଂପର୍କ ଅଛି ତେଣୁ ବାପା ନିରବ ରୁହନ୍ତି। କଳାକାର ହେଲେ ସମାଜର ପ୍ରତ୍ୟେକ ଚାଲିଚଳନ, ରୀତିନୀତି, ହାବଭାବ, ଚିନ୍ତାଅନୁଚିନ୍ତା, ପର୍ବପର୍ବାଣି, ବିଧିବିଧାନ ଓ ଭଲମନ୍ଦକୁ ବୁଝିବା ଉଚିତ୍। ଏଇ ନ୍ୟାୟରେ ବଉଳଫୁଲ-କିଛିଟା ଗୋଟିଏ ଦିନ ପୂଜାପାଇଁ ଗଲେ, ପ୍ରତିବାଦ କରିବା ଅନୁଚିତ ବୋଲି ବାପା ଓ ମୁଁ ଧରିନେଇଥିଲୁ।

କଷିଆମ୍ବ ଯେତେବେଳେ ଗୁଡହାଣ୍ଡିମିଠା ଆମ୍ବ ଗଛଟିରେ ଧରେ ସେଇଦିନଠାରୁ ବାପାଙ୍କ ମୁଖମଣ୍ଡଳରେ ଆତ୍ମ-ସନ୍ତୋଷର ଏକ ପରିପୂର୍ଣ୍ଣତୃପ୍ତିକୁ ଅନେକଥର ଦେଖିଛି। ନାଟକ-ମଞ୍ଚ-ଅଭିନୟ ସହ ବୃକ୍ଷପ୍ରେମର ଏକ ସଂପୂର୍ଣ୍ଣ ଫେଣ୍ଟାଫେଣ୍ଟି ବ୍ୟକ୍ତିତ୍ୱ "ବାପା"। "ବାପା" ସବୁବେଳେ ଅଭିନୟ ପାଇଁ ସହର ଛାଡି ଅନ୍ୟ ସହରକୁ ଗଲେ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରୁଥିଲେ। ଆମ୍ବଗଛରେ ଆମ୍ବ ପରିପକ୍ୱ ଅବସ୍ଥାକୁ ଆସିଲେ ବାପା ଲୋକଲଗାଇ ଆମ୍ବ ମୁଣା-ଖୁଣ୍ଟୁଣୀ ଦ୍ୱାରା ତୋଳିବାର ବ୍ୟବସ୍ଥା କରୁଥିଲେ। ସାଇପଡିଶାଙ୍କୁ ମହାଆନନ୍ଦରେ କିଛିକିଛି ବାଣ୍ଟିଦେଉଥିଲେ। ଅନ୍ୟ ହାତକୁ ଆମ୍ବଦେବା ସମୟରେ ଜୟ ଶ୍ରୀଜଗନ୍ନାଥ ଉଚ୍ଚାରଣ କରୁଥିଲେ।

ସବୁଦିନ ସମାନ ଯାଏନାହିଁ। ସବୁଋତୁ ରହେନାହିଁ, କିନ୍ତୁ କିଛି କଥା ଅଛି ତାହା ଯୁଗଯୁଗକୁ ସାହିତ୍ୟ, ଗଳ୍ପ, ଉପନ୍ୟାସ, ପୁରାଣ ଅବା ନାଟକକଳା ମାଧ୍ୟମରେ ପିଢିପରେ ପିଢି ପାଇଁ ଜୀବନ୍ତ ହୋଇ ରହିଯାଏ।

ବାପାଙ୍କର ବୟସ ବଢିବଢି ଚାଲିଲା। ଆମ୍ବଗଛ ମଧ୍ୟ ବେଶ ଉଚ୍ଚା ଓ ମୋଟେଇ ଗଣ୍ଡି ହୋଇ ହୃଷ୍ଟପୁଷ୍ଟ ହୋଇ ବଢିଲା। ପାଚେରୀ ବାହାରକୁ ରାସ୍ତା ଉପରେ ତାର ଶାଖାପ୍ରଶାଖା ମେଲିଲା। ପ୍ରତିବର୍ଷ ଗ୍ରୀଷ୍ମଋତୁରେ ଆମ୍ବରେ ଡାଳଭର୍ତ୍ତିହୋଇ ଲଇଁଲଇଁ ଯାଏ।

ପୌଷପୂର୍ଣ୍ଣମୀ ସୁଦ୍ଧା ପ୍ରତ୍ୟେକ ବର୍ଷ ଆମ୍ବଗଛଟିରେ ବଉଳ ଧରିଆସିଥାଏ। କେବେ ବ୍ୟତିକ୍ରମ ଅବା ଋତୁର ବିଳମ୍ବିତ ଅନିଶ୍ଚିତତାର ପରିଣାମରେ, ପୌଷପୂର୍ଣ୍ଣମୀ ଠାରୁ ଦୀର୍ଘଦିନ ବିତିବା ପରେ ବଉଳ ଆସେ, ଗଛର ଚାରିପାର୍ଶ୍ୱ ମହକିଉଠେ। ଗୋଟିଏ ନିଶ୍ଚିତ ଆମ୍ରତୃପ୍ତିରେ ପରିଣତ ହେବାପୂର୍ବର ସୂଚନା ଆମ୍ବଗଛରେ "ବଉଳ"।

ପରେ ଆମ୍ବଗୁଡିକର ସ୍ୱାଦିଷ୍ଟ ମିଠା କିସମ ଆମ ସାଇପଡିଶାଙ୍କ ଦୃଷ୍ଟିର କେନ୍ଦ୍ରବିନ୍ଦୁ ପାଲଟିଲା। ଯିଏ ଥରଟିଏମାତ୍ର ଆମ୍ବକୁ ଚାଖିଛି ଲାଳାୟିତହୋଇ ଅଧିକ ପାଇବା ପାଇଁ ଆଶାରଖିଲା। ଆଶା ରଖିବା ସ୍ୱାଭାବିକ ମଧ୍ୟ। ଏହିପରି ଆମବାଡିର ମିଠାଆମ୍ବର ପରିଚୟ "ଗୁଡହାଣ୍ଡିମିଠା" ବୋଲି ପ୍ରତ୍ୟେକ ପରିଚିତଙ୍କ ପାଖରେ ବେଶ ପ୍ରସିଦ୍ଧି ପାଇଲା।

ଇତି ମଧ୍ୟରେ ଅନେକ ମାଘ, ଫଗୁଣ, ପୌଷ ତଥା ବର୍ଷା ଓ ଗ୍ରୀଷ୍ମଭଳି ଋତୁ ଗଡିଗଡି ଚାଲିଲା। ମାତ୍ର ଏକଫୁଟରୁ କମ୍‌ଉଚ୍ଚତା ବିଶିଷ୍ଟ ଆମ୍ବଗଛ ଚାରାଟି ତା'ର ରୋପଣ ପରେ ବଢିବାକୁ ଲାଗିଲା। ବେଶ୍ ଉଚ୍ଚା ପାଇଲା ଓ ଆମ ଏକମହଲା ବିଶିଷ୍ଟ ଘରର ଛାତଉପରକୁ ତାର ଶାଖାପ୍ରଶାଖା ମେଲାଇ ଚାଲିଲା।

ଆମ୍ବଗଛ ସହ ବାପାଙ୍କର ବୟସ ମଧ୍ୟ ବଢିବଢି ଚାଲିଲା। ସେହିବର୍ଷଟି ଥିଲା ୨୦୦୬ ମସିହା। ସବୁ ଗତାନୁଗତିକ ଚାଲିଥିଲା ଓଡିଶା ଓ ଆମ ଦେଶରେ ରାଜନୀତି, ଖେଳ, ଚଳଚ୍ଚିତ୍ର ଜଗତ ସହ ମଞ୍ଚନାଟକ ଜଗତ ମଧ୍ୟ ଚଳଚଞ୍ଚଳ ଥିଲା, କୌଣସି ବ୍ୟତିକ୍ରମ ନଥିଲା। ଓଡିଶାର କ୍ଷୁଦ୍ର ସହରଟିରେ ଆମ ପରିବାରରେ ମୋ ବାପା ମଧ୍ୟ ଅତିକ୍ରାନ୍ତ ବୟସରେ ନାଟକ ସମୀକ୍ଷା ଲେଖିବା ସହ ଆଖପାଖ ଅଂଚଳରେ ଥିବା ବିଦ୍ୟାଳୟ ଅବା କଲେଜସହ କୌଣସି ସାଂସ୍କୃତିକ ଅନୁଷ୍ଠାନରୁ ଡାକରା ଆସିଲେ ନାଟକର ନିର୍ଦ୍ଦେଶନା ଓ ନାଟକ ଚୟନନିମିତ୍ତ ସସମ୍ମାନେ ଡାକରାପାଇ ଯାଉଥିଲେ। ସେ ଏବେ ପୂର୍ବବତ୍ ନାଟକରେ ପ୍ରତ୍ୟକ୍ଷ ଅଭିନୟରୁ ଅବ୍ୟାହତି ନେଇଥିଲେ।

ମୁଁ ଏହିବର୍ଷ ଗୋଟିଏ ଘଟଣାକୁ ଛାଡିଦେଲେ ଅନ୍ୟ କୌଣସି ଘଟଣାରେ ଆଶ୍ଚର୍ଯ୍ୟାନ୍ୱୀତ ହୋଇନଥିଲି। ଘଟଣାଟି ଥିଲା ଏହିପରି, ଶାରଦୀୟ ଦୁର୍ଗାପୂଜା ପାଇଁ ସାଇରେ ହେଉଥିବା ମେଢ ଓ ପୂଜାପାଇଁ ସହଯୋଗରାଶି ସଂଗ୍ରହରେ ଘରକୁଘର ବୁଲି ଚାନ୍ଦା ଆଦାୟ କରୁଥିବା ଚାରିଜଣ ଯୁବକ ଯେତେବେଳେ ଆମଘର ସାମ୍ନାଗେଟ୍

ଖୋଲି ହତାଭିତରକୁ ଆସି ମୋତେ ଭେଟି କହିଥିଲେ "ଆଜ୍ଞା ! ଆପଣଙ୍କ ହତାରେ ଗେଟ୍ ନିକଟରେ ଥିବା ଆମ୍ବଗଛଟିରେ କ'ଣ ଏ ଅଦିନରେ 'ବଉଳ' ଆସିଛି ?" ମୁଁ ନିଜେ ମୋ ନଜରପକାଇ ଦେଖିଲି ଆମ୍ବଗଛରେ ସତରେ ଏ ଅବେଳରେ 'ଅଦିନିଆ ବଉଳ' ଧରିଛି। ମୁଁ ସେମାନଙ୍କ ସହ ବିଶେଷକିଛି କଥାବାର୍ତ୍ତା ନହୋଇ କେବଳ ଚାନ୍ଦାଦେଇ ସେମାନଙ୍କଠାରୁ ରସିଦ ଖଣ୍ଡିଏ ଧରି ଘରଭିତରକୁ ଫେରିଲି।"

ମୋର ବସାଉଠା ବୈଠକଘରକୁ ଲାଗି ବାପାଙ୍କର ବୈଠକଘର। ବାପାଙ୍କୁ ଯାଇ ଆଶ୍ଚର୍ଯ୍ୟ ହୋଇ ଏ ବିଷୟରେ ଜଣାଇବା ପରେ "ବାପାଙ୍କ ମୁଖମଣ୍ଡଳରେ ସାମାନ୍ୟତମ ପ୍ରତିକ୍ରିୟାର ଆଭାସ ପାଇନଥିଲି। ସେ 'ଅଦିନିଆ ବଉଳ' ପାଇଁ କ'ଣ ତାଙ୍କର ଚିନ୍ତା ଚେତନାରେ ଅନୁଭବ କରିଥିଲେ ତାହା ଭିନ୍ନକଥା, କିନ୍ତୁ ସେ ନିଜର ବୈଠକଘରେ ଲାଗିଥିବା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପଟ୍ଟଚିତ୍ରକୁ ଚାହିଁ ପ୍ରଣାମ କରିଥିଲେ।"

ଶାରଦୀୟ ଦୁର୍ଗାପୂଜା ଆସିଲା ଓ ଭସାଣୀ ମଧ୍ୟ ସରିଲା। ବାପାଙ୍କ ଶରୀରରେ ଅସୁସ୍ଥତା ମଧ୍ୟ ଦେଖାଦେଲା। ନିକଟସ୍ଥ ଏକ ପ୍ରତିଷ୍ଠିତ ହସ୍ପିଟାଲ ଯାଇ ସେଠାରେ ବାପାଙ୍କ ହେଲ୍‌ଥ ଚେକ୍‌ଅପ୍ ପାଖାପାଖି ପନ୍ଦରଦିନ ଧରି ଚାଲିଲା। ମଧୁମେହ ଓ ହୃତ୍‌ପିଣ୍ଡରେ ବ୍ୟତିକ୍ରମ ଅଛି, ଚିକିତ୍ସାକଲେ ଭଲ ହୋଇଯିବ ବୋଲି ଡାକ୍ତର କହିଲେ। ଡାକ୍ତରଙ୍କ ପରାମର୍ଶରେ ଚିକିତ୍ସା ଚାଲିଲା। ଘରେ ତାଙ୍କର ବୈଠକ ଘରଟିକୁ ଦେଖିଲେ ଗୋଟିଏ ଛୋଟକାଟର ଔଷଧ ଦୋକାନଭଳି ଲାଗିଲା।

ନୂଆ ଅଦିନିଆ ବଉଳରୁ ଛୋଟଛୋଟ ଆମ୍ବକଷି ଧରିବା ପୂର୍ବରୁ ବାପା ଇହଲୀଳା ସମ୍ବରଣ କଲେ।

ମୁଁ ବାପାଙ୍କୁ ଏ ଜଗତରୁ ହରେଇବା ବର୍ଷଠାରୁ ଆଜିପର୍ଯ୍ୟନ୍ତ ଅନ୍ୟାନ୍ୟ ବର୍ଷଗୁଡ଼ିକରେ ଶାରଦୀୟ ପୂଜା ଅବସର ପରଠାରୁ ଆମ୍ବଗଛକୁ ଅତି ସନ୍ତର୍ପଣ ସହକାରେ ଓ ଉତ୍ସୁକତାର ସହ ଲକ୍ଷ୍ୟ କରିଆସୁଛି, କିନ୍ତୁ କେବେବି ଆଉ ଅଦିନିଆ ବଉଳକୁ ଆମ୍ବଗଛରେ ଦେଖିନାହିଁ।

ବୋଧହୁଏ ଏହା ସତ୍ୟ ଯେ ବୃକ୍ଷଜଗତ ମଧ୍ୟ ଠିକ୍ ପାଳିତ ପଶୁପକ୍ଷୀଙ୍କ ଭଳି ମଣିଷସହ ଆତ୍ମିକ ଓ ଭାବଗତ ସଂପର୍କର ଡୋରିରେ ବନ୍ଧା। ଗଛ ମଧ୍ୟ ନିଜର ଭାବନାକୁ ଅକଳ୍ପନୀୟ ଢଙ୍ଗରେ ପ୍ରାକୃତିକ ପରିବର୍ତ୍ତନକୁ ଆପଣେଇ ନେଇ ନିଜର ଆତ୍ମୀୟ ବ୍ୟକ୍ତିମାନଙ୍କ ପାଇଁ ପ୍ରତିକ୍ରିୟା ପ୍ରକାଶ କରିଥାନ୍ତି।



# ମନ୍ଦିରର ଚତୁର୍ଥ ପାହାଚରେ 'ମୁଁ

ମୁଁ ଆମ ପ୍ରଦେଶର ଯେଉଁ ଇଲାକାରେ ବା ସହରରେ ରହୁଛି ସେହି ସହରର ଅଧିକାଂଶ ଲୋକ ଶିକ୍ଷକ, ଦାର୍ଶନିକ, ଲେଖକ, ଅର୍ଥନୀତିଜ୍ଞ, ବିଚକ୍ଷଣ ନ୍ୟାୟଶାସ୍ତ୍ରବିତ୍, ବ୍ୟବସାୟୀ ଅବା ପ୍ରଶାସକ। ମୁଁ କହିବାର ସାରକଥାଟି ହେଉଛି ଅଧିକାଂଶ ଜନତା ତଥାକଥିତ ଶିକ୍ଷିତ ଗୋଷ୍ଠୀର। ମୁଁ ମୋର ବୃତ୍ତି ବ୍ୟବସାୟକରି ଏ ସହରରେ ଦୀର୍ଘଦିନରୁ ବସବାସ କରି ରହିଆସୁଅଛି। ହିନ୍ଦୁ କୁଳବଂଶଜ ହୋଇ ଥିବାରୁ ମୁଁ ମୋର ବ୍ୟାବସାୟିକ ପ୍ରତିଷ୍ଠାନର କାମରେ ଦିନରାତି ପ୍ରାୟତଃ ନିମଗ୍ନ ହୋଇ ରହିଥାଏ। ମୋର ଏକ ଅଭ୍ୟାସଗତ ପ୍ରବୃତ୍ତି ଅଛି ଯେ, ମୁଁ ପ୍ରତ୍ୟେକ ସପ୍ତାହରେ ସୋମବାର ଏବଂ ଶନିବାରଦିନ ମୋ ଘରପାଖରେ ଥିବା ହନୁମାନଙ୍କ-ମନ୍ଦିରକୁ ଯାଇ ଭଗବାନଙ୍କ ଦର୍ଶନ କରିଥାଏ। ହନୁମାନଙ୍କ ମନ୍ଦିରଟି ଯଦିଚ ଅଧିକ ପୁରାତନ ସମୟର ନୁହଁ, ତଥାପି ଏହି ମନ୍ଦିରଟି ପ୍ରତିଷ୍ଠା ହେବାର ପ୍ରାୟ ପଚିଶବର୍ଷ ହୋଇଗଲାଣି।

ମନ୍ଦିରଟିର ନିର୍ମାଣ ସମୟରେ ଏହାର କର୍ମକର୍ତ୍ତା ସଭିଏଁ ଥିଲେ ଗୋଟିଏ ସ୍ଥାନୀୟ କ୍ଲବର ସଦସ୍ୟ। ଆଜି ସେହି ପ୍ରତିଷ୍ଠାତା ସଭ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ସଦସ୍ୟ ଏ ଧରାପୃଷ୍ଠରେ ନାହାନ୍ତି, ସ୍ୱର୍ଗବାସୀ ହୋଇ ସାରିଲେଣି।

ମୁଁ ଈଶ୍ୱରଙ୍କ ଦର୍ଶନ ପାଇଁ ଯେଉଁ ଅଭିଳାଷ ନେଇ ମନ୍ଦିର ପାହାଚରେ ବସେ, ସେହି ଅଭିଳାଷ ମଧ୍ୟରେ ମୁଖ୍ୟତଃ ଗୋଟିଏ ଇଚ୍ଛା ଥିଲା ଅତ୍ୟନ୍ତ ଦର୍ଶନତତ୍ତ୍ୱଭିତ୍ତିକ। ମୁଁ ଭାବେ ମୋର ଏହି ଅଭିଳାଷଟି ଗୋଟିଏ ବ୍ୟତିକ୍ରମ ଯାହାକି, ହୁଏତ ଅନ୍ୟ କେଉଁ ଶ୍ରଦ୍ଧାଳୁ ଅବା ଭକ୍ତଙ୍କ ନିକଟରେ ଆଦୌ ନଥିବ।

ମୋର ଅଭିଳାଷଟି ଥିଲା ଏହିପରି, "ହେ ଈଶ୍ୱର ତୁମେ କ'ଣ ସତରେ ଏହି ମନ୍ଦିରରେ ଏହି ପଥର ଖୋଦେଇ ମୂର୍ତ୍ତିରେ ଜୀବନ୍ତରୂପେ ପ୍ରତିଷ୍ଠା ପାଇଛ ? ତୁମେ ପ୍ରତ୍ୟେକ ଭକ୍ତ/ଶ୍ରଦ୍ଧାଳୁଙ୍କୁ ଠିକ୍‌ରୂପେ ଚିହ୍ନି ସେମାନଙ୍କ ଅନାବିଳ ଭକ୍ତି ଓ ଶ୍ରଦ୍ଧାରେ ପ୍ରୀତହୋଇ ଆଶୀର୍ବାଦ ପ୍ରଦାନ କରୁଛ ?"

ମୁଁ ଜାଣିଛି, "ପ୍ରଭୁ ତୁମେ ସର୍ବତ୍ର ସର୍ବମୟକର୍ତ୍ତା ରୂପେ ପ୍ରତିଟି ଜୀବ ଅବା ଜଡରେ ବିଦ୍ୟମାନ ଏବଂ ତୁମର ଏହି ପ୍ରସ୍ତର ମୂର୍ତ୍ତି ପ୍ରତିଷ୍ଠା ପାଇସାରିବା ପରେ ତୁମେ ପ୍ରାଣବନ୍ତ ହୋଇ, ଆମଭଳି / ଅବା ମୋ ଭଳି ପ୍ରତ୍ୟେକଙ୍କ ଆତ୍ମାରେ ବିରାଜମାନ । ତେବେ, ତୁମକୁ ମୁଁ ଯେତେବେଳେ ଆସି ଦର୍ଶନକରି ପ୍ରଣିପାତ କରିଛି ତୁମଠାରେ କେବଳ ଏକ କରୁଣାସିକ୍ତ ଦୁଃଖହାରୀ ଅବା ସଂକଟମୋଚନକାରୀ ମହାଶକ୍ତିର ସ୍ୱରୂପକୁ ଦେଖୁଛି। ତୁମର ଅସ୍ତିତ୍ୱକୁ ନେଇ ମୁଁ ସର୍ବାଦୌ ସନ୍ଧିହାନ ନୁହେଁ। ତୁମେ ଓଁକାର ରୂପରେ ବିଦ୍ୟମାନ, ତୁମେହିଁ ସତ୍ୟ, ତୁମେ ସୃଷ୍ଟିକର୍ତ୍ତା, ସୃଷ୍ଟିର ପାଳନକାରୀ ପୁରୁଷ, ତୁମେ ଭୟଶୂନ୍ୟ, ଶତ୍ରୁଶୂନ୍ୟ, କାଳାତୀତ ମୂର୍ତ୍ତି, ତୁମେ ଅଯୋନିସମ୍ଭୂତ।" ସତରେ ତୁମେ କ'ଣ ସେହି କରୁଣାମୟ ଓ ସର୍ବପାପମୋଚନକାରୀ ଏକ ନିର୍ବାକ ନିଶ୍ଚଳ ଶକ୍ତିର ଅହରହ ଆଶୀର୍ବାଦ ପ୍ରଦାତା ? ଯିଏ କେବଳ ଏହି ପ୍ରସ୍ତର ମୂର୍ତ୍ତିରେ ହିଁ ବିଦ୍ୟମାନ ?

ସେଦିନଟି ଥିଲା ଶନିବାର, ସତ୍ୟ ଓ ସନାତନ ଧର୍ମରେ ଦୀକ୍ଷିତ ପ୍ରତ୍ୟେକ ହିନ୍ଦୁଙ୍କର ପ୍ରିୟ ଓ ଆଦରଣୀୟ ଦେବତା ସଂକଟମୋଚନ ପବନସୂତ ହନୁମାନଙ୍କର ପବିତ୍ରବାର। ସେଦିନ ଶନିବାର ଥିବାରୁ ମୁଁ ପୂର୍ବବତ୍ ଆମ ସାହିମୁଣ୍ଡରେ ଥିବା ମନ୍ଦିରକୁ ପ୍ରାତଃସ୍ନାନ ସାରି ଗୋଟିଏ ଫୁଲମାଳଧରି ଈଶ୍ୱର ଦର୍ଶନପାଇଁ ବାହାରିଗଲି।

ମୁଁ ମନ୍ଦିର ସାମ୍ନାରେ ଲାଗିଥିବା ଲୁହାଗ୍ରୀଲ୍ ଗେଟ୍ ସାମ୍ନାରେ ବସିଥିବା ଚାରିପାଞ୍ଚଜଣ ଭିକ୍ଷୁକଙ୍କୁ ମୋର ସାଧ ମତେ କିଛି ଟଙ୍କା ତାଙ୍କ ସିଲଭର ବାସନ ଥାଳିରେ ପକାଇ ଦେଇ ମନ୍ଦିର ପାହାଚରେ ଚଢ଼ିଲି।

ଏହି ମନ୍ଦିର ପ୍ରତିଷ୍ଠା ପରେ ପ୍ରାରମ୍ଭିକ ସମୟରେ ଯେତେବେଳେ ପ୍ରଥମେ ପୂଜକଙ୍କୁ ଡାକି ସେହି ମନ୍ଦିର ପ୍ରାଙ୍ଗଣରେ ବିକ୍ରୀ ହେଉଥିବା ପାଞ୍ଚଟଙ୍କାର ଛୋଟ ମାଟି ଦୀପଟିଏ କିଣିଲି ସେତେବେଳେ ପୂଜକଙ୍କୁ କିଛିବି କହିନଥିଲି। କାରଣଟା ଅତି ସ୍ୱଷ୍ଟ ଯେ, ମୁଁ ପ୍ରାୟତଃ ଏହି ଅଭ୍ୟାସରେ ଅଭ୍ୟସ୍ତ ଜଣେ ଶ୍ରଦ୍ଧାଳୁ। ଅବଶ୍ୟ ଶନିବାର ଓ ସୋମବାରଗୁଡ଼ିକରେ ମୁଁ ପୂଜକ ନନାଙ୍କୁ ପାଞ୍ଚଟଙ୍କିଆ ନୋଟଟିଏ ଅବା କଏନଟିଏ ଦେଇ ଏହି ଏକା ଅନୁରୋଧ କରିଆସିଥିଲି ଯେ, 'ନନା ମୋ ନିମିତ୍ତ ଦୀପଟିଏ ହନୁମାନଙ୍କ ବିଗ୍ରହ ସମ୍ମୁଖରେ ଜାଳିଦିଅ।' ସେ ମଧ୍ୟ ପରବର୍ତ୍ତୀ ସମୟରେ ମୁଁ ମନ୍ଦିର ପ୍ରାଙ୍ଗଣରେ ପହଞ୍ଚି ହାତରେ ଥିବା ପାଞ୍ଚଟଙ୍କା ବଢ଼ାଇବା ସଙ୍ଗେସଙ୍ଗେ ମୋ ହାତରୁ ଟଙ୍କାନେଇ ପୂଜାସ୍ଥଳରେ ଥିବା ଚଉଡ଼ା କଂସାଥାଳିଟିରେ ଟଙ୍କା ରଖିଦେଇ ଘିଅର ଦୀପଟିଏ ନେଇ ହନୁମାନଙ୍କ ବିଗ୍ରହ ସମ୍ମୁଖରେ ଜାଳି ଦିଅନ୍ତି। ମୁଁ ପ୍ରଣାମ କରେ ଘଣ୍ଟିଟିକୁ ନିଜହାତରେ ମୁଣ୍ଡଉପରେ ଝୁଲାଇ ଝୁଲାଇ ପିଟିଥାଏ।

ଆଜିର ଦିନଟି ଥିଲା ପୂର୍ବଦିନ ଭଳି ଗୋଟିଏ ସାଧାରଣ 'ଶନିବାର'। ମୁଁ ମନ୍ଦିର ପାହାଚ ଚଢି ଗୋଟିଏ ଦୀପକିଣି ନନାଙ୍କୁ ଦେବା ଉଦ୍ଦେଶ୍ୟରେ ଯେତେବେଳେ ପକେଟ୍‌ରେ ହାତପୂରାଇବାର ଉପକ୍ରମ କରୁଥାଏ ମୋ ନିକଟରେ ଅତି ପରିଚିତ ଚାରିଜଣ ମଣିଷ ସେମାନଙ୍କ ନିଜସ୍ୱ ଭଙ୍ଗୀରେ ବୀର ହନୁମାନଙ୍କୁ ନିଜର ଭକ୍ତିଭାବକୁ ପ୍ରକାଶ କରୁଥିଲେ। ସଭିଏଁ ପାହାଚ ଚଢି ହନୁମାନଙ୍କ ବିଗ୍ରହ ନିକଟକୁ ଯୋଡ ହସ୍ତରେ ପ୍ରଣାମକରି ଆଗେଇ ଆସୁଥିଲେ। ସେହି ଚାରିଜଣଙ୍କୁ ମୁଁ ପୂର୍ବରୁ ଚିହ୍ନିଛି।

ପ୍ରଥମ ଜଣକ, ଜଣେ ପଞ୍ଚଚାଳିଶ ବର୍ଷର ବ୍ୟକ୍ତି, ଯାହାଙ୍କ ନାମ ରଣଜିତ୍ ସିଂହ। ସେ ପ୍ରାୟତଃ ନିଜକୁ ସବୁବେଳେ ଛଦ୍ମବେଶ ଓ ଛଦ୍ମନାମରେ ପରିଚୟ ଦେଇ, ସରଳ ନୀରିହ ଲୋକଙ୍କ ବିଶ୍ୱାସଭାଜନ ହୁଅନ୍ତି। ପରେ, ଅପର ବ୍ୟକ୍ତିଟିର ବିଶ୍ୱାସରେ ନିଜର ବ୍ୟକ୍ତିତ୍ୱର ପ୍ରତିଷ୍ଠା ଏଭଳି କରିଦିଅନ୍ତି ଯେ, ସେ ବ୍ୟକ୍ତିଟି ଭାବେ ସତରେ ସିଂହବାବୁ ଜଣେ କରିତକର୍ମା ବ୍ୟକ୍ତି।

କାହାର ପୁଅ ଯଦି ଉଚ୍ଚ ଶିକ୍ଷିତ ହୋଇ ଚାକିରୀ ଖଣ୍ଡିଏ ନପାଇ ଘରେ ବେକାର ବସିଥାଏ ତ ତାକୁ ସିଂହବାବୁ କୁହନ୍ତି, 'ମୋର ଅତି ନିଜର ଆତ୍ମୀୟ ପରିଚିତ ବ୍ୟକ୍ତି ହେଉଛନ୍ତି ଏ ରାଜ୍ୟର ରେଭେନ୍ୟୁ ମିନିଷ୍ଟର ଶ୍ରୀଯୁକ୍ତ ପ୍ରଶାନ୍ତ ବିଶ୍ୱାଳ। ମୁଁ ବିଶ୍ୱାଳ ସାର୍‌ଙ୍କୁ କହି ରେଭେନ୍ୟୁ ଡିପାର୍ଟମେଣ୍ଟରେ କୌଣସି ନା କୌଣସି ଅଫିସ୍‌ରେ ସରକାରୀ ଚାକିରୀ ଖଣ୍ଡିଏ ନିଶ୍ଚିତ ତୁମ ପୁଅ ପାଇଁ ବନ୍ଦୋବସ୍ତ କରିଦେବି।

ଯେଉଁ ଘରେ ପୁଅ ବେରୋଜଗାର ହୋଇ ବସିଥାଏ ସେ ପରିବାରର ମୁଖ୍ୟ ହିସାବରେ କେବଳ ବାପା ଓ ମାଆ ହିଁ ଜାଣନ୍ତି ତାହା ସେମାନଙ୍କ ପାଇଁ କିଭଳି ବୋଝ। ତେଣୁ ସେହି ବେରୋଜଗାରିଆ ପୁଅର ବାପା, ସିଂହବାବୁର ମାୟାଜାଲରେ ଫସିବାକୁ ଅଧିକ ସମୟ ଲାଗେନାହିଁ। ଦୁର୍ବଳ ମୁହୂର୍ତ୍ତ ଦେଖି ସିଂହବାବୁ ବେରୋଜଗାର ପୁଅର ବାପା ପାଖରୁ ଲକ୍ଷେ ଦୁଇଲକ୍ଷ ଅବା ଅଧିକ ଟଙ୍କା, ଚାକିରୀ କରେଇ ଦେବାର ପ୍ରଲୋଭନ ଦେଖାଇ ହଡପ କରିନେବାରେ ସକ୍ଷମ ହୋଇଯାଏ। ଠିକ୍ ଅନୁରୂପ ପ୍ରକାରେ ଅଭିଆଡି ଝିଅର ଉପଯୁକ୍ତ ବର ସନ୍ଧାନ ଓ ବିବାହ ସ୍ଥିର କରିବାକୁ ଏହିକ୍ରମରେ ରଣଜିତ୍ କେତେ ଯେ ଲୋକଙ୍କୁ ଠକିଛି ଓ ନିର୍ଭର ପ୍ରତିଶ୍ରୁତି ଦେଇ ଲକ୍ଷଲକ୍ଷ ଟଙ୍କା କନ୍ୟାପିତାଙ୍କ ଠାରୁ ହଡପକରି ନେଇଛି। ସେହି ଠକାମୀର କୌଣସି ଠୋସ ପ୍ରମାଣ ନରଖିବାରେ ତା'ର ହିସାବ ନାହିଁ। ରଣଜିତ୍ ସିଦ୍ଧହସ୍ତ ହୋଇଥିବାରୁ ସବୁ ଅପବାଦ, ନିନ୍ଦା, ଦୋଷ ଓ ଦଣ୍ଡରୁ ଅତି କୁଶଳୀ ଖେଳୁଆଡ ଭାବେ ଖସିଯିବାରେ ସକ୍ଷମ ହୋଇପାରିଛି।

ମୁଁ ମନ୍ଦିରର ଦ୍ୱିତୀୟ ପାହାଚ ଚଢ଼ିବା ସମୟରେ ଦେଖିଲି "ଋତୁପର୍ଣ୍ଣା ନାମ୍ନୀ ତିରିଶବର୍ଷର ଯୁବତୀଟିକୁ"। ସେ ମାତ୍ର ଏକବର୍ଷ ହେବ ଆମ ଇଲାକାର ଚତୁର୍ଥ ଲେନ୍ (ଯେଉଁ ଲେନର ପଞ୍ଚମ ଘରଟିରେ ମୁଁ ଦୀର୍ଘଦିନରୁ ସପରିବାର ଧରି ରହିଆସୁଅଛି ସେହିଠାରେ ମୋ ଘରର ଠିକ୍ ସାମ୍ନାରେ) ଅର୍ଥାତ ପ୍ଲଟ ନଂ ୬୬ରେ ରହିଆସୁଛି। ସେ ବିବାହିତା, ତାର କୌଣସି ସନ୍ତାନ ସନ୍ତତି ଥିବା କଥା ମୁଁ ଆଜିସୁଦ୍ଧା ଜାଣିନାହିଁ। କିନ୍ତୁ ତା'ର ସ୍ୱାମୀ ଓ ସେ କରୁଥିବା ବ୍ୟବସାୟର ଦୁଇ ସହଯୋଗୀ ସେହି ଏକା ପ୍ଲଟରେ ଭିନ୍ନଭିନ୍ନ ଦୁଇବଖରା ଘରେ ଏକତ୍ର ରହିବା କଥା ମୁଁ ଜାଣିଛି। ଋତୁପର୍ଣ୍ଣା ବିଷୟରେ ମୁଁ ଯେଉଁ ସବୁ ଖବର ମୋ ପାଖପଡୋଶୀଙ୍କ ଠାରୁ ଶୁଣିଚି ତାହା ମୋର ଓ ଆପଣଙ୍କ କଳ୍ପନାତୀତ କଥା। ମୁଁ ଠିକ୍ ଉପଲବ୍ଧି କରିଛି ଯେ, ନିଆଁ ନଥିଲେ ଧୂଆଁ ନବାହାରିବା ଯେଉଁଭଳି ଧ୍ରୁବସତ୍ୟ, ଋତୁପର୍ଣ୍ଣା ନାମ୍ନୀ ନାରୀଟି ବିରୁଦ୍ଧରେ ଶୁଣିଥିବା ଅପବାଦ ଓ ନିନ୍ଦାର ଦଲିଲ ମଧ୍ୟ ନିଶ୍ଚିତ ସତ୍ୟର ସ୍ୱାକ୍ଷର। ଋତୁପର୍ଣ୍ଣା ଦେହଜୀବୀ, ଋତୁପର୍ଣ୍ଣା ଦୁଷ୍ଚରିତ୍ରା, ଋତୁପର୍ଣ୍ଣା ଲେଡି ବ୍ଲାକମେଲର। ରାଜ୍ୟର ଉଚ୍ଚ ପଦ-ପଦବୀ ଓ ଧନୀ ବ୍ୟବସାୟୀ, ସିନେମା ପ୍ରଯୋଜକ ତଥା ରାଜନେତାମାନଙ୍କୁ ସେ ପ୍ରଥମେ ନିଜର ମାୟାଜାଲରେ ଫସେଇ ଅର୍ଥ ଆତ୍ମସାତ୍ କରିବାକୁ ବ୍ଲୁପ୍ରିଣ୍ଟ ପ୍ରସ୍ତୁତ କରେ। ଯଦି କେହି ରାଜନେତା, ଧନୀ ବ୍ୟବସାୟୀ ଅବା ସିନେମା ଅଭିନେତା, ପ୍ରଯୋଜକ କିମ୍ୱା ନିର୍ଦ୍ଦେଶକ ତା'ର ମାୟାଜାଲରେ ଫସିଯାଆନ୍ତି ତେବେ ସେ ବ୍ଲାକମେଲ କରି ସେମାନଙ୍କ ପାଖରୁ ଦାମୀ ଗାଡ଼ି, ଗହଣା ଅବା ଟଙ୍କା ହଡପ କରିନେବାରେ ସଫଳ ହୁଏ। ମୁଁ ପ୍ରଥମେ ଯେତେବେଳେ ମୋ ଧର୍ମପତ୍ନୀଙ୍କ ଠାରୁ ଋତୁପର୍ଣ୍ଣାର ଦୁଶ୍ଚରିତ୍ର ଓ ବିନାଶକାରୀ ଚକ୍ରାନ୍ତର ମୂଳ ସୂତ୍ରଧାରୀର ପରିଚୟ ପାଇଲି ସହଜରେ ବିଶ୍ୱାସକରି ନଥିଲି। କିନ୍ତୁ ସେହି ମାୟାବିନୀ ନାରୀ ବିଷୟରେ ମୋ ସ୍ତ୍ରୀ ମୋତେ କହିଥିବା ସବୁକଥା ଯେ ସତ ଏକଥା ଯେତେବେଳେ ଓଡିଶାର ପ୍ରମୁଖ ସମ୍ବାଦପତ୍ର ଓ ଟେଲିଭିଜନ ଗଣମାଧ୍ୟମରୁ ପଢି ଶୁଣି ଦେଖି ଜାଣିବାକୁ ପାଇଲି ମୋର ଅବିଶ୍ୱାସ, ବିଶ୍ୱାସରେ ରୂପାନ୍ତରିତ ହୋଇଗଲା। ସେ ଓଡିଶାର ରାଜନେତା, ମନ୍ତ୍ରୀ, ଚଳଚ୍ଚିତ୍ର ପ୍ରଯୋଜକଙ୍କ ଠାରୁ ଆରମ୍ଭକରି ପ୍ରତିଷ୍ଠିତ ବ୍ୟବସାୟୀମାନଙ୍କୁ ଧମକ ଚମକ ଦେଇ ମୋଟା ଅଙ୍କର ଟଙ୍କା ଲୁଟିବାରେ ଥିଲା 'ମାହିର'। ସେ ବର୍ତ୍ତମାନ ଏହି ସହରର ଗୋଟିଏ ପ୍ରମୁଖ ଇଲାକାରେ କୋଟି କୋଟି ଟଙ୍କା ବ୍ୟୟକରି ଗୋଟିଏ ଆଲିସାନ ବଙ୍ଗଳା ନିର୍ମାଣ କରୁଛି। ସେ ବଙ୍ଗଳା ନିର୍ମାଣ ପାଇଁ ଏତେ ଟଙ୍କା କେଉଁଠାରୁ ପାଇଲା,ପାଇଥିବା ଟଙ୍କା ସତ୍‌ଉପାୟରେ ଅର୍ଜିତ କି ନାହିଁ, ଏସବୁର ଖୋଳତାଡ ସରକାର କରୁଛନ୍ତି। ନିକଟରେ ସେ ଆରେଷ୍ଟ ମଧ୍ୟ ହୋଇଥିଲା। କିଛିଦିନ ଜେଲ୍‌ରେ ରହିବାପରେ ବର୍ତ୍ତମାନ ବେଲ୍‌ରେ ଆସିଛି। ଆଜି ମନ୍ଦିରରେ ପହଞ୍ଚିଛି।

ତୃତୀୟ ପାହାଚ ଚଢିଲି, ମୋ ସାମ୍ନାରେ ସର୍ବେଶ୍ୱର ଆଲିଆସ ଅସରବା ନାମକ ଠିକାଦାର ହନୁମାନଙ୍କ ବିଗ୍ରହ ସାମ୍ନାରେ ଦୀପଟିଏ ଧରି ମନ୍ଦିରର ମାର୍ବଲ କାନ୍ଥରେ ଖୋଦେଇ ହୋଇ ଲେଖାଯାଇଥିବା ହନୁମାନ ଚାଳିଶାକୁ ଗୁଣୁଗୁଣୁହୋଇ ପଠନରତ ଥିଲା । ସର୍ବେଶ୍ୱର ଠିକାଦାର କଥା ଅଧିକ କ'ଣ ଅବା କହିବି ? ସେ ଥିଲା, ପଥରମାଫିଆ, ଏକନମ୍ବର ଚୋରା ପଥର ବେପାରୀ, ତା'ର ଚୋରା ପଥର ବ୍ୟବସାୟ କେବଳ ଓଡିଶା ନୁହେଁ ଓଡିଶା ବାହାରେ ମଧ୍ୟ ବେଶ୍ କାୟା ବିସ୍ତାର କରିଛି । ରାଜସ୍ଥାନ ଉତ୍ତର ପ୍ରଦେଶ, ମଧ୍ୟପ୍ରଦେଶ ଓ ମହାରାଷ୍ଟ୍ର ସବୁ ରାଜ୍ୟରେ ତା'ର ଚୋରା ପଥର ବ୍ୟବସାୟ ବେଶ୍ ସୁଦୃଢ ।

ମୁଁ ଆଜକୁ ପଚିଶବର୍ଷ ତଳର କଥାକୁ ରୋମନ୍ଥନ କରୁଛି । ସେହି ଉଣେଇଶ ଶହ ପଞ୍ଚାନବେ ମସିହାର କଥା, ଯେଉଁ ବର୍ଷ ଏହି ସଂକଟମୋଚନ ବଜରଙ୍ଗବାଲୀଙ୍କର ମନ୍ଦିର ପ୍ରତିଷ୍ଠାର ପୂର୍ବ ଘଟଣା । ଆଜି ଯେଉଁ ମାଟିରେ ଏ ମନ୍ଦିର ପ୍ରତିଷ୍ଠା ହୋଇଅଛି ଓ ନିତିଦିନ ପ୍ରଭୁ ସଂକଟମୋଚନ ହନୁମାନ ପୂଜାପାଉଛନ୍ତି, ସେହି ଜମିଟି "ସରକାରୀ ଅନାବାଦି ଜମି" । ପ୍ରଥମେ ମନ୍ଦିରର ପ୍ରତିଷ୍ଠାତା ତଥା ନିର୍ମାଣପଛର ବ୍ୟକ୍ତିବିଶେଷମାନେ ସ୍ଥାନୀୟ କର୍ପୋରେଟରକୁ ନିଜର ହାତବାରିସୀ କରି, ସରକାରୀ ଜମିରେ ସର୍ବସାଧାରଣଙ୍କ ପାଇଁ ମନ୍ଦିର ନିର୍ମାଣ କରୁଛନ୍ତି ଏବଂ ଜମିଟିକୁ ସରକାର ମନ୍ଦିରର ପଞ୍ଜିକୃତ ଟ୍ରଷ୍ଟ ନାମରେ କରନ୍ତୁ ବୋଲି ଦାବୀ ସରକାରଙ୍କ ନିକଟରେ ଜଣାଇଲେ । ସର୍ବେଶ୍ୱର ଆଲିଆସ ଅସରବା ନିଜେ ଟ୍ରଷ୍ଟର ସେଟ୍ଲର୍ ଟ୍ରଷ୍ଟିରୂପେ ସରକାରୀ କାଗଜପତ୍ରରେ ନିଜର ଦସ୍ତଖତ ଦେଲା । ପରେ ମନ୍ଦିର ନିର୍ମାଣ ସରକାରୀ ସହାୟତା ଓ ସ୍ଥାନୀୟ ଲୋକଙ୍କଠାରୁ ଆଦାୟ ଚାନ୍ଦା ଅର୍ଥରେ ନିର୍ମାଣ ସରିଲା । ମନ୍ଦିର ଚତୁଃପାର୍ଶ୍ୱରେ ଆଠଟି ଦୋକାନଘର ମଧ୍ୟ ଚାନ୍ଦା ଟଙ୍କା ପଇସାରେ ତିଆରି ହେଲା । ଦୋକାନଘରଗୁଡିକୁ ସର୍ବେଶ୍ୱର ଭଡାରେ ଲଗାଇ ଭଡାଟଙ୍କା ଆଦାୟ କରି ପ୍ରତ୍ୟେକ ମାସ ଆତ୍ମସାତ୍ କଲା ।

ପଥର ବେପାରୀ ସର୍ବେଶ୍ୱରର ବିଚକ୍ଷଣ ବୁଦ୍ଧି କେବଳ ଏହି ମନ୍ଦିର ନିର୍ମାଣ ଓ ଦୋକାନଘରୁ ଅନ୍ୟାୟରେ ସଂଗୃହୀତ ଟଙ୍କାକୁ ହଡପ କରିବାରେ ସୀମିତ ନଥିଲା । ମୁଁ ଯେଉଁ ମନ୍ଦିରର ବିଗ୍ରହ ଶ୍ରୀ ଶ୍ରୀ ହନୁମାନଙ୍କୁ ନିତିପ୍ରତିଦିନ ପ୍ରଣିପାତ କରେ ସେହି ବିଗ୍ରହର କଳାମୁଗୁନି ପଥରଟି "ଚୋରା ପଥର" ବୋଲି ଓଡିଶାର ପ୍ରମୁଖ ସମ୍ବାଦପତ୍ର ଗୁଡିକରେ ବେଶ୍ କିଛିଦିନ ଚର୍ଚ୍ଚାର ବିଷୟ ତଥା ହେଡଲାଇନ୍ ରୂପେ ପ୍ରକାଶ ପାଇଲା । ସର୍ବେଶ୍ୱରର "ଚୋରାପଥର" ଆଜି ସଂକଟମୋଚନ ହନୁମାନଙ୍କ ପୂଜ୍ୟ "ବିଗ୍ରହ" ।

ମୁଁ ମନ୍ଦିରର ଚତୁର୍ଥ ପାହାଚ ପରେ ମନ୍ଦିରର ଅଗଣା ପିଣ୍ଡାରେ ଝୁଲୁଥିବା ପିତ୍ତଳ ଘଣ୍ଟିଟିକୁ ଡାହାଣ ହାତ ବଢେଇ "ଠନ୍-ଠନ୍-ଠନ୍" ଶବ୍ଦକରି ବଜାଇଲି। ଈଶ୍ୱରଙ୍କ ଆଶୀର୍ବାଦ ପ୍ରଦାନକାରୀ ମୁଖମଣ୍ଡଳରେ ସ୍ମିତ-ହସର ଝଲକ ମୋର ଅନ୍ତରକୁ ନିର୍ମଳ କଲା, ଈଶ୍ୱର ତ ଈଶ୍ୱର ପ୍ରଶ୍ନ ଅବା କ'ଣ? ସେ ସମୟରେ ଘଟଣା-ପରିସ୍ଥିତି ମୋର ଅନ୍ତର୍ନିହିତ ଭାବନା ଓ ଚେତନାକୁ ଉସୁକାଇ ଦେଲା। ମୋର ଅନ୍ତରର ନିରୀହ ଆତ୍ମା ମୋତେ ସତେ ଯେମିତି ପରିହାସ କଲା।

କେବଳ ଗୋଟିଏ ଅସମାହିତ ପ୍ରଶ୍ନ ମୋତେ ସତେ ଯେପରି ପରିହାସ କଲା ଓ ଅବସୋସରେ ପକାଇ ହନ୍ତସନ୍ତ କଲା। ମୁଁ କୁହୁକପେଡ଼ିର ଘୋଡ଼ଣି ଯେତେ ଖୋଲିଲେ ମଧ୍ୟ କୁହୁକପେଡ଼ିର ଘୋଡ଼ଣି ଗୋଟିଏ ପରେ ଗୋଟିଏ ଅସରନ୍ତି ପିଆଜ ପାଖୁଡ଼ା ସଦୃଶ ବାହାରିବାରେ ଲାଗିଲା।

ମୁଁ ଆଶ୍ଚର୍ଯ୍ୟ ଚକିତ ଯେ, ଈଶ୍ୱରରୂପୀ ଭଗବାନ ଯେହେତୁ ପଥରରେ ନିର୍ମିତ ତେଣୁ ତାଙ୍କର ହୃଦୟ ପଥର ପାଲଟି ଯାଇଛି ଓ ସବୁବର୍ଗର ସତ୍‌ଜନ ଓ ଦୁର୍ଜନଙ୍କୁ ନିଜର ଅଦୃଶ୍ୟ କୋମଳ ହୃଦୟରୁ ଆଶୀର୍ବାଦ ଅହରହ ଦେଉଛନ୍ତି। ପାପାତ୍ମା ଓ ପୁଣ୍ୟାତ୍ମା ସମସ୍ତେ ମୋକ୍ଷ ପାଆନ୍ତୁ ସତେ ଯେମିତି ଈଶ୍ୱରଙ୍କ ଶେଷ ସିଦ୍ଧାନ୍ତ ତଥା ଇଚ୍ଛା।

ମୁଁ ଦୀପଟିଏ ମନ୍ଦିରରେ ବିଗ୍ରହଙ୍କୁ ପ୍ରଣିପାତ କରି ଘରକୁ ଫେରିଲି। ଯେହେତୁ ଈଶ୍ୱରଙ୍କୁ ସ୍ମରଣ, ଦର୍ଶନ, ବନ୍ଦନା, ପ୍ରଶଂସା କଲେ ହିଁ ପତିତମାନଙ୍କର କଳୁଷ ଧୋଇ ହୋଇଯାଏ ଓ ସେ ଶାନ୍ତିପାଏ। ମୁଁ କ'ଣ ଆଗାମୀ ପାହାଚରେ ଚଢ଼ୁଥିବା ପତିତଟିଏ ନୁହେଁ କି?



# ବ୍ଲୁ ପ୍ରିଣ୍ଟ

ସୁବାସୀ ମା' ଆଖିକୁ ରାତିସାରା ନିଦନାହିଁ। ଗୋଟିଏ ଚିନ୍ତା କେମିତି ସକାଳର ସୂରୁଯ ଉଇଁବ ଆଉ ସେ ଯାଇ ଗାଁ ହାଇସ୍କୁଲ ପଡିଆରେ ହାଜର ହେବ। ଗତବର୍ଷ ଭଳି ଏବର୍ଷ ମଧ୍ୟ ଗାଁରେଥିବା ପୁଲିସ୍‌ଫାଣ୍ଡିର କନ୍‌ଷ୍ଟେବଲ ଆଉ ଇନସ୍‌ପେକ୍ଟର 'ଫାଣ୍ଡିଖୋଲିବା ପୂର୍ବରୁ ବଡନେତା ଭୁବନେଶ୍ୱରରୁ ଆସି ବଲେରୋ ଜିପ୍‌ରେ ପହଞ୍ଚିଯିବେ। ସୁବାସୀ ମା' ଦାଦନଖଟି ଯାଉଥିବା ଲେକୁରୁ ଦାସର ସ୍ତ୍ରୀ, ପାଠଘର ଶୂନ। କେବଳ ନୋଟ୍ ଦେଖି କହିପାରେ କେଉଁଟା ପାଞ୍ଚଟଙ୍କିଆ, କେଉଁଟା ଦଶଟଙ୍କିଆ ଅବା ପଚାଶ -ଶହେ ଟଙ୍କିଆ ନୋଟ। ରେଜା, ଖୁଚୁରାର ଦେଣନେଣ ପ୍ରତ୍ୟେକ ଦିନ ସେ କରୁଥିବାରୁ ସେସବୁକୁ ମଧ୍ୟ ହାତ ଆଙ୍ଗୁଠି ଟିପରେ ସେ ଆଖିବୁଜି କହିଦେଇପାରେ କେତେ ଟଙ୍କାର କଏନ୍ ସେ ଗଣିଛି।

ଲେକୁରୁ ମେହନତି ଲୋକ। ମରଦପଣିଆ ଯଥେଷ୍ଟ, ତା'ର ଫଳସ୍ୱରୂପ ସୁବାସୀ ମା' ଚାରି ଚାରିଟି ସନ୍ତାନର ଜନନୀ। ଉଭୟଙ୍କ ପରିବାର ଗରୀବ, ତେଣୁ ବାହାଘର ସମୟରେ ଯାନିଯୌତୁକରେ ବାହାଘର ସଂପନ୍ନ ହୋଇଥିଲା। ଖଟ, ପିଢା, ଅବା ଶାଢୀ, ସାଇକେଲର ଦେଣନେଣ ହେଇନଥିଲା। ସାଂଘାତିକ ଆର୍ଥିକ ଅନାଟନ ଭିତରେ ଗାଁରେ ମୂଲଲାଗିବା କାମ ନମିଳିଲେ ଲେକୁରୁ କିଛି ଗାଁର କୁଜିନେତାଙ୍କର ବୋଲହାକ କରେ। ସେମାନଙ୍କ ପାଇଁ ପାନୀୟ ଯୋଗାଣ କରେ, ଚାଖଣା ଆଣେ। ସଂଧ୍ୟାରେ ସେ ନିଜେ ଦେଶୀ ପେଟେ ପିଇଦେଇ ଆସି ସୁବାସୀ ମା'ର ଦେହକୁ ରାତି ସାରା ଅଟା ଚକୁଟିଲା ପରି ଚକୁଟିଥାଏ। ସୁବାସୀ ମା'ର ମାସିକ ବାରଣ ବେଳରେ ମଧ୍ୟ ସେ ସୁବାସୀ ମା'ର ବାରଣକୁ ଫୁ କିନା ଉଡାଇଦିଏ।

ଏବେ କିନ୍ତୁ ଲେକୁରୁର ପରିସ୍ଥିତି ଓଲଟା । ନା ସେ କାମ ପାଉଛି ନା ସେ ବିପିଏଲ କାର୍ଡ ପାଇଛି? ସେ ଦିନକୁ ୧୦୦ଟି ଟଙ୍କା ଉପାର୍ଜନ କରିବା ମଧ୍ୟ କାଠିକରପାଠ। ମଦ ପିଇପିଇ ଜରାଜୀର୍ଣ୍ଣ ଶରୀରଟାକୁ ନେଇ ଗାଁର ନଦୀ ରାସ୍ତାର ବନ୍ଧହୁଡା ପାଖରେ ଜରି ଆଉ ତାଳପତ୍ରରେ ତିଆରି ଘରଭିତରେ ପ୍ରାୟ ଦିନରାତି ଛିଣ୍ଡା

କନ୍ଥା ଜାବୁଡି ଧରି ଶୋଇ ରହୁଛି। ଦିନକୁ ଦିନ ତାର କାଶ ବଢୁଛି। କାଶିଲେ ପାଟିରୁ ରକ୍ତ ପଡୁଛି। ସୁବାସୀ ମା' ଗାଁର କିଛି ସମ୍ଭ୍ରାନ୍ତ ପରିବାର ଘରକୁ ଯାଇ ବୋଲହାକ କରି ଯେତିକି ଟଙ୍କା ମିଳେ ସେତିକିରେ ଚାରିପିଲା ଆଉ ଗେରସ୍ତର ସେବାକରେ। ଦିନେ ଅଟୋଟିଏ ଭଡାକରି ଗେରସ୍ତକୁ ଟଙ୍କା ଖର୍ଚ୍ଚକରି ବଡ ଡାକ୍ତରଖାନା ନେଇ ଡାକ୍ତରଙ୍କୁ ପଚାରିବାରେ ଡାକ୍ତରବାବୁ ଲେକୁରୁର ଶରୀର ପରୀକ୍ଷା କରି କହିଲେ ଲିଭର ସିରୋସିସ୍ ହୋଇଛି। ତାର ମଦ ପିଇବା ଅଭ୍ୟାସ ଶୀଘ୍ର ଛଡା, ନଚେତ୍ ଭବିଷ୍ୟତ ଅନ୍ଧକାର।

ସୁବାସୀ ମା' ସବୁ ବୁଝିଲା ଭଳି ମୁଣ୍ଡ ଟୁଙ୍ଗାରୀ ହଁ କରି ଡାକ୍ତରଙ୍କ ନିକଟରୁ ବିଦାୟନେଇ ଘରକୁ ଫେରିଥିଲା। ଡାକ୍ତରବାବୁ କହିଥିବା ରୋଗର ନାଁଟା ମଧ୍ୟ ତାର ମନେ ରହିଲା ନାହିଁ। ଘର ଚଳାଇବା ପାଇଁ ଟଙ୍କା ଦରକାର। ଏଣେ ସୁବାସୀ ମା' ରୋଜଗାର କରି ଯାହା ଆଣିଲେ ଏ ମହଙ୍ଗା ଯୁଗରେ ସମୁଦ୍ରକୁ ଶଙ୍ଖେ ଭଳି।

ଏଣୁ ସକାଳୁ ସକାଳୁ ସ୍ଥାନୀୟ ନେତାଙ୍କ ବଲେରୋ ଗାଡିପାଖରେ ପହଞ୍ଚି ସୁବାସୀ ମା' ଗୋଟିଏ ବଡ ମଦବୋତଲ ଏବଂ ଅନ୍ୟପାଖରେ ଚାରିଶହ ଟଙ୍କାର ବିଡାଟିଏଧରି ଘରକୁ ଫେରିଲା। ମନେ ମନେ ଭାବିଲା ଏ ମଦ ବୋତଲ ତା ପାଇଁ ସର୍ବଗ୍ରାସୀ ମୃତ୍ୟୁର ଦୂତହୋଇ ଆସି ପହଞ୍ଚିଛି। ଏଣୁ ମଦବୋତଲକୁ ବନ୍ଧଭିତରକୁ ଫୋପାଡି ଦେଲା। ଚାରିଶହ ଟଙ୍କାର ଡାଲି, ତେଲ, ଲୁଣ କିଣି ଘରେ ଆସି ପହଞ୍ଚିଲା। ହିସାବ କଲା ନେତା ଯଦି ତା'ଭୋଟଟିଏ ପାଇ ଜିତିଯାଆନ୍ତି ତେବେ ପାଞ୍ଚବର୍ଷ ପାଇଁ ଏମ୍‌ଏଲ୍‌ଏ ପଦରେ ବସିବେ। ଏମ୍‌ଏଲ୍‌ଏ ପଦପାଇ ଯାହା ଉନ୍ନତି କରିବେ ସେ ବିଗତ ଦଶବର୍ଷ ହେଲା ଦେଖିଆସୁଛି।

ବର୍ଷକୁ ତିନିଶହ ପଞ୍ଚଷଠି ଦିନ, ସୁବାସୀ ମା' ମନେ ମନେ ପାଞ୍ଚବର୍ଷର ଦିନ ସବୁର ଆକଳନ କରି ମନେମନେ ଚାରିଶହ ଟଙ୍କାକୁ ଭାଗକଲା। ହରଣର ଜଟିଳସୂତ୍ର ତା ମସ୍ତିଷ୍କରେ ପଶିପାରିଲା ନାହିଁ କିମ୍ବା ଛିଡିପାରିଲା ନାହିଁ। ଦିନକୁ ସେ କେତେ ଟଙ୍କା ପାଇଲା, ସଠିକ ନିର୍ଣ୍ଣୟ କରିପାରିଲା ନାହିଁ। ଠିକ୍ ଏତିକିବେଳେ ଗାଁର ଚିଫ ଇଞ୍ଜିନିୟର ସୁଶାନ୍ତ ପଣ୍ଡା ସେ ରାସ୍ତାରେ ଯାଉଥିଲେ। ସୁବାସୀ ମା' ନେତାଙ୍କ ପ୍ରାକ୍‌ନିର୍ବାଚନୀ ଦାନ ବିଷୟରେ ସୂଚନା ଦେବାପରେ କହିଲା, "ବାବୁ! ବର୍ତ୍ତମାନ ଆପଣଙ୍କର ଘରେ ଯାଇ ମୁଁ ପାଇଟି ସାରିବି। କିନ୍ତୁ ଚାରିଶହ ଟଙ୍କା ମୁଁ ପାଇଛି। ନେତା, ଏମ୍‌ଏଲ୍‌ଏ ହେଲେ ପାଞ୍ଚବର୍ଷ ଗାଦିରେ ବସିବେ। ତେବେ ମୁଁ ଦୈନିକ କେତେ ପାଇବି ଅବା ପାଇଛି ବୋଲି ଟିକିଏ ହିସାବକରି କହିଦିଅନ୍ତୁ ତ" ? ପଣ୍ଡାବାବୁ ସ୍ମିତ ହସଟିଏ ମୁହଁରେ ଫୁଟାଇ, ପକେଟରୁ ମୋବାଇଲ୍‌ରେ କାଲକୁଲେଟରଟିକୁ ଅନ୍‌କରି ହିସାବକରି କହିଲେ, "ଆରେ !

ଦିନକୁ ତୁ ଚାରିଅଣା ମାନେ ପଚିଶ ପଇସାଠୁ ମଧ୍ୟ କମ୍ ପାଇଲୁ। ଯାହାର ମୂଲ୍ୟ ଆଜିର ଦିନରେ କିଛି ହେଲେ ନାହିଁ।"

ସୁବାସୀ ମା' ମୁହଁ ଫିକା ପଡିଗଲା। ଭାବିଲା ଭିକାରୁଣୀଟିଏ ହୋଇ ଯଦି ଭିକମାଗିବ କେହି ହେଲେ ଚାରିଅଣା ମଧ୍ୟ ଦେଉନାହାନ୍ତି ! ତେଣୁ ସେ ଭିକାରୁଣୀଠାରୁ ମଧ୍ୟ ହୀନ।

ଠିକ୍ ଏତିକିବେଳେ ବଡନେତାଙ୍କର ବଲେରୋ ଗାଡିଟି ଧୂଆଁଛାଡି ଗାଁର ଦାଣ୍ଡରେ ଧୂଳି ଉଡାଇ ସୁବାସୀ ମା'କୁ ଅଧିକ ଅପରିଚ୍ଛନ୍ନକରି ହର୍ଣ୍ଣମାରି ଦ୍ରୁତଗତିରେ ଗାଁ ଦାଣ୍ଡ ଡେଇଁ ଚାଲିଗଲା ଆଉ ଅଦୃଶ୍ୟ ହୋଇଗଲା। ଆଜିର ନେତାମାନେ ସତେ ଯେମିତି ଭିକାରୀ ଭିକାରୁଣୀ ସୃଷ୍ଟି କରିବା ଲକ୍ଷ୍ୟରେ ସତତ ଚେଷ୍ଟାରତ। ଦରିଦ୍ର ଓଡିଶାର ଗୋଟିଏ "ବ୍ଲୁପ୍ରିଣ୍ଟ" ଧରି ନିର୍ବାଚନ ଆଗରୁ ଓଡିଶା ଭ୍ରମଣରେ ଗାଁରୁ ଗାଁକୁ ବାହାରିପଡନ୍ତି।



# ଲୁହର ପିସି

ରମେଶ ଯେଉଁଦିନ ବୁର୍ଲା ଇଞ୍ଜିନିୟରିଂ କଲେଜରେ ସିଭିଲ ଇଞ୍ଜିନିୟରିଂରେ ସିଟ୍‌ଟିଏ ପାଇଲା ସେଦିନ ବୋଧହୁଏ ସବୁଠାରୁ ଅଧିକ ଆନନ୍ଦ ପାଇଥିଲେ ରମେଶର ମାଆ ଇନ୍ଦୁମତୀ। ଇନ୍ଦୁମତୀ ସାହୁ ହେଉଛନ୍ତି ଦେବରାଜ ସାହୁ ପାନମସଲା ବ୍ୟବସାୟୀଙ୍କ ଧର୍ମପତ୍ନୀ। ପୁଅ ରମେଶର ଜନ୍ମ ବିବାହର ପ୍ରାୟ ବାରବର୍ଷରେ ଅନେକ ମାନସିକ ଏବଂ ବ୍ରତ କଲାପରେ ହୋଇଥିଲା। ତେଣୁ ରମେଶ ପାଇଁ ମା ଇନ୍ଦୁଙ୍କ ମନ ସର୍ବଦା ଶୁଭକାମନାର କଳସ ପରି ପୂର୍ଣ୍ଣଇଚ୍ଛାମୟ – ମନଟିଏ। ଯେତେ ଉପମା, ଯାହା ପାଇଁ ଶବ୍ଦ ହୁଏ ଅଭାବ, ଦୁନିଆରେ ସବୁଠାରେ ନିଜ ସନ୍ତାନ ପାଇଁ ପିଲାର ଅର୍ଦ୍ଧଳି ଯିଏ ସହେ ସିଏତ 'ମାଆ'। ସତରେ କେତେ ମହାନ ମାଆଟି। ଝୁଣ୍ଟିପଡିଲେ, ବାଟ ହୁଡିଲେ ଅବା ଶରୀରରେ କୌଣସି ଆଘାତ ଲାଗିଲେ, ବ୍ୟସ୍ତତାରେ ଯେଉଁ ଶବ୍ଦ ଆପେଆପେ ପାଟିରୁ ବାହାରିଆସେ ତାହା ହେଉଛି ମାଆ। ଏ କଥାର ଅନ୍ତହୀନ ଇଲାକାର ଉଜ୍ଜ୍ୱଳ ଆଲୋକରଶ୍ମିର ଅନ୍ୟନାମ ମାଆ।

ରମେଶ ପ୍ରଥମେ ବ୍ରହ୍ମପୁରର ପୂର୍ତ୍ତବିଭାଗରେ ଇଞ୍ଜିନିୟର ଭାବେ ଜଏନ୍ କଲେ। ଏଣୁ ମାଆଙ୍କୁ ସାଙ୍ଗରେ ନେଇଗଲେ ବ୍ରହ୍ମପୁର ସହରକୁ ଏକାକୀ ଜୀବନ ବିତାଇବା ବାସ୍ତବରେ ଏକ ମରୁ ଉଦ୍ୟାନ ସଦୃଶ। ରମେଶ, ଇନ୍ଦୁଦେବୀଙ୍କର ତିନି ସନ୍ତାନ ମଧ୍ୟରେ ଜ୍ୟେଷ୍ଠ ସାନ ଦୁଇ ଝିଅ ଦେବରାଜ ସାହୁଙ୍କ ଜୀବିତାବସ୍ଥାରେ ବିବାହକରି ବର୍ତ୍ତମାନ ସୁଦୂର ଆମେରିକାରେ ବସବାସ କରୁଛନ୍ତି। ପରିବାର ଯେତେବେଳେ ପରମାଣୁରୁ ବିଭାଜିତ ହୋଇ ଅଣୁରେ ପରିଣତ ହେଲା ଇନ୍ଦୁଦେବୀ ବିଧିର ବିଧାନକୁ ସାଦରେ ଗ୍ରହଣ କରିନେଲେ। ଝିଅ ଦୁଇଜଣ ନିଜର ଘରସଂସାରକରି ବାହାରେ ରହିଲେ। ରମେଶବାବୁ, ସମୟକ୍ରମେ ନିଜ ବୃତ୍ତିରେ ଯେତେ ସମୟାନୁବର୍ତ୍ତିତା ଏବଂ ସଚ୍ଚୋଟପଣିଆକୁ ନେଇ କର୍ତ୍ତବ୍ୟନିଷ୍ଠ ହେଲେ, ଉପର ମହଲରେ ଇଂ.ରମେଶ ବାବୁଙ୍କ ସୁଖ୍ୟାତି ସେତେ ବଢିବାକୁ ଲାଗିଲା। ଶେଷରେ ଚାକିରିକାଳର ଦଶବର୍ଷ ବ୍ରହ୍ମପୁରର ସର୍ବାଙ୍ଗୀନ ଉନ୍ନତି ନିମିତ୍ତ ବିନିଯୋଗ କରିବାପରେ ମନ୍ତ୍ରୀ ଏବଂ ଉପରିସ୍ଥ ଅଫିସରଙ୍କ

ନଜରରେ ଇଂ.ରମେଶ ବାବୁ ଏକମାତ୍ର ଯନ୍ତ୍ରୀ ଯିଏ ଭୁବନେଶ୍ୱରର ପୂର୍ତ୍ତ ଏବଂ ଗୃହନିର୍ମାଣ ସଂସ୍ଥାରେ ଚିଫ୍ ଇଞ୍ଜିନିୟର ପଦବୀ ନିମିତ୍ତ ଉପଯୁକ୍ତ ବୋଲି ବିବେଚିତ ହେଲେ। ଫଳସ୍ୱରୂପ ଇଞ୍ଜିନିୟର ରମେଶ ସାହୁଙ୍କର ରାତାରାତି ବଦଳି ଅର୍ଡର ଆସି ବ୍ରହ୍ମପୁରର ପି.ଡବ୍ଲୁ.ଡି ଅଫିସରେ ପହଞ୍ଚିଲା।

ରମେଶ ବାବୁ ସପତ୍ନୀକ ନିଜ ମାଆଙ୍କୁ ଧରି ଭୁବନେଶ୍ୱର ଆସି ସରକାରୀ ବାସଭବନରେ ଯେଉଁଦିନ ପହଞ୍ଚିଲେ, ସେଦିନ ଜଣେ ପଞ୍ଚତିରିଶି ବୟସର ମହିଳା ସରକାରୀ କ୍ୱାର୍ଟରର ଗେଟ ଖୋଲିଥିଲା। ବାବୁ, ଆସନ୍ତୁ! ମୋ ପାଖରେ ଆପଣଙ୍କ କ୍ୱାର୍ଟରର ଚାବି ଅଛି। ମୁଁ ପି.ଡବ୍ଲୁ.ଡି ଅଫିସର ମାଳି ଶ୍ରୀଧରର ଘରଣୀ, ମୋର ନାମ ସ୍ନେହଲତା। ମୁଁ ଆଉ ମୋର ପରିବାର ଏଇ କ୍ୱାର୍ଟରର ପଛପାଖ ଆଉଟ ହାଉସ୍‌ରେ ରହୁ । ମୋର ଘର ସଂସାର କହିଲେ, ମୁଁ, ମୋର ସ୍ୱାମୀ ଶ୍ରୀଧର ଆଉ ଚଉଦ ବର୍ଷର ପୁଅ ଶଶାଙ୍କ, ମୋ ଆଖିର ତାରା, ସେ ବର୍ତ୍ତମାନ ଟିଉସନ ଯାଇଛି। ବର୍ତ୍ତମାନ ବୋଧହୁଏ ଫେରୁଥିବ। ମୋର ଆଶା, ମୋ ସ୍ୱପ୍ନ, ସେ ପାଠ ପଢି ବଡ ମଣିଷ ହେବ। ଗୋଟିଏ ନିଃଶ୍ୱାସରେ ଅନର୍ଗଳ ଭାବରେ ଅଥଚ ନିମ୍ନ ସ୍ୱରରେ ସ୍ନେହଲତା କହିବାର କିଛି ସମୟପରେ ସ୍ନେହଲତା ଉଦ୍ଦେଶ୍ୟରେ ରମେଶ ପଚାରିଲେ, ଏଠି କେଉଁଠି ଭଲ ନିରାମିଶ ହୋଟେଲ ପାଖରେ ଅଛିତ? ଆଜି ରାତି ଆମେ ହୋଟେଲରୁ ମଗେଇ ରାତ୍ରିଭୋଜନ ସାରିବାକୁ ଚାହୁଁଛୁ। ମାଆଙ୍କୁ ତୁମେ ହାତଧରି କ୍ୱାର୍ଟରର ଗୋଟିଏ ରୁମ୍‌କୁ ନେଇଯାଅ। ହଁ, ତା'ପରେ ଯାଇ ନିକଟସ୍ଥ ହୋଟେଲରୁ ତିନୋଟି ଭେଜ୍ ମିଲ ନେଇ ଆସିବ । ରମେଶ ସାହୁ ସପତ୍ନୀକ କ୍ୱାର୍ଟର ଭିତରକୁ ପ୍ରବେଶ କରିବାପରେ ମାଳିପତ୍ନୀ ସ୍ନେହଲତା ଇଞ୍ଜିନିୟର ପରିବାରଙ୍କ ନିମିତ୍ତ ପାଖ ଗଳିରେ ଥିବା ଲକ୍ଷ୍ମୀ ଭୋଜନାଳୟରୁ ଭୋଜନ ଆଣିବା ପରେ ରାତ୍ରିର ଅର୍ଦ୍ଧପ୍ରହର ଯାଏଁ ଜିନିଷପତ୍ର ସବୁ ସଜଡାସଜଡି କରି କ୍ୱାର୍ଟରରେ ସ୍ୱାମୀ ଏବଂ ସ୍ତ୍ରୀ ଦୁହେଁ ଶୋଇବାକୁ ଗଲେ।

ବେଶ୍ କିଛିଦିନ ଯାଏଁ ଚିଫ୍ ଇଞ୍ଜିନିୟର ରମେଶ ବାବୁଙ୍କ ଭୁବନେଶ୍ୱରର ପାଣିପବନରେ ଚରିତ୍ର ତଥା ଚାଲି ଚଳଣରେ ପରିବର୍ତ୍ତନ ଆସିନଥିଲା। ସେ ନୀତିନିଷ୍ଠ ଏବଂ ସଚ୍ଚୋଟପଣିଆର ବ୍ୟକ୍ତିତ୍ୱ ଥିଲେ। ସରଳ ନିଷ୍କପଟ ଜୀବନଚର୍ଯ୍ୟାର ସଂସ୍କାର ସେ ବାପା ଏବଂ ମାଆଙ୍କ ପାଖରୁ ଗୁଣସୂତ୍ରର ଧାରକ ରୂପେ ପାଇଥିଲେ। କିନ୍ତୁ ଜଗତରେ ସବୁକଥା ସବୁବେଳେ ସମାନ ରହେନାହିଁ। ବେଙ୍ଗ କହେ ବେଙ୍ଗୁଲିଲୋ, ପୃଥ୍ୱୀ କ୍ଷଣ କ୍ଷଣକେ ଆନ! ଏକଥାର ସତ୍ୟତା ରମେଶବାବୁଙ୍କ ଚରିତ୍ରରେ ପ୍ରତିଫଳିତ ହେଲା। ସେ ଆଉ ପୂର୍ବର ରମେଶବାବୁ ହୋଇ ରହିଲେ। ନାହିଁ। ତାଙ୍କର ଚାଲିଚଳଣ,

ବସାଉଠା ଏପରିକି ଦୈନନ୍ଦିନ ଜୀବନଚର୍ଯ୍ୟାରେ ପରିବର୍ତ୍ତନ ପରିଲକ୍ଷିତ ହେଲା। ରାଜଧାନୀର ପାଣିପବନ ଏବଂ ମନ୍ତ୍ରୀ ଏମ୍.ଏଲ୍.ଏ ଙ୍କ ସହ ବସାଉଠା, ଟେଣ୍ଡର କାମରେ ପିସି କାରବାର ଏବଂ ଅଧିକରୁ ଅଧିକ ସମ୍ପତ୍ତିଠୁଳ କରିବାର ନିଶା ତାଙ୍କର ଦିନକୁ ଦିନ ବଢ଼ିବାକୁ ଲାଗିଲା। ମାଆ ଇନ୍ଦୁମତୀ ଏବଂ ଧର୍ମପତ୍ନୀ ରମେଶଙ୍କ ଚାଲିଚଳଣରେ ପରିବର୍ତ୍ତନ ଦେଖି ମନରେ ଶଙ୍କାଗ୍ରସ୍ତ ହୋଇଥିଲେ। ଅନେକଥର ରମେଶ ବାବୁଙ୍କ ସ୍ତ୍ରୀ ମଧ୍ୟ ନିଜର ସ୍ୱଧର୍ମ ପାଳନ କରିବାକୁ ଯାଇ କହିଥିଲେ ଦେଖ ଭଗବାନ ଆମକୁ ସବୁ ଦେଇଛନ୍ତି। ଘରଦ୍ୱାର, ଭଲ ଦରମା, ସନ୍ତାନ ସନ୍ତତି କେଉଁଥିରେ ହେଲେ କମ୍ କରିନାହାନ୍ତି। ଏଣୁ ତୁମେ ପିସି ନେବା, ନିମ୍ନମାନର ସିମେଣ୍ଟ, ରଡ କିଣି କାର୍ଯ୍ୟ କରିବାର ଅଭ୍ୟାସରୁ ନିଜକୁ ନିବୃତ୍ତ କର। ସତେ ଯେମିତି ଧର୍ମପତ୍ନୀଙ୍କ କଥା ରମେଶବାବୁଙ୍କ ଏ କାନରେ ପଶି ସେ କାନରେ ବାହାରିଯାଇଥିଲା। ସମୟ ଏବଂ ପରମାତ୍ମା ମାଟି ଉପରର ମଣିଷକୁ କେତେବେଳେ କଣ ଦେଇଥାନ୍ତି ଅବା ନେଇଥାନ୍ତି ତାହା କେବଳ ସେହିଁ ଜାଣିଥାନ୍ତି। ଯେଉଁ ପୁଅ ଇଞ୍ଜିନିୟରିଂ ପାଠପଢ଼ିବା ପାଇଁ ବୁର୍ଲା ଇଞ୍ଜିନିୟରିଂ କଲେଜରେ ସିଟ୍ ପାଇଲା ସେଦିନ ମାଆଙ୍କ ହୃଦୟ ଗର୍ବରେ ଭରିଉଠୁଥିଲା କିନ୍ତୁ ଚିଫ୍ ଇଞ୍ଜିନିୟର ହେବାପରେ ମାଆଙ୍କ ହୃଦୟ ସତେ ଯେମିତି ରମେଶବାବୁଙ୍କ ଚାଲିଚଳନରେ ଭାଙ୍ଗିପଡ଼ିଲା। ରମେଶବାବୁ ଏଥର ପ୍ରଚୁର ମଦ୍ୟପାନ ଭଳି କୁଅଭ୍ୟାସର ମୂର୍ତ୍ତିମନ୍ତ ପ୍ରତୀକ ସାଜିଲେ। ପ୍ରବଳ ପିସି କାରବାର ସାଙ୍ଗକୁ ପ୍ରତ୍ୟେକ ଦିନ ସନ୍ଧ୍ୟା ଗଡ଼ିଲେ ଯାଇ ବାର୍‌ରେ ହାଜର। କଣ୍ଟ୍ରାକ୍ଟର ପ୍ରତାପ ପଟ୍ଟନାୟକ ଥିଲା ରମେଶ ବାବୁଙ୍କ ମଧୁଶାଳାର ମଧୁମୟ ଘନିଷ୍ଠ ବନ୍ଧୁ। ସତେ ଯେମିତି ଉଭୟଙ୍କ ପେଶା ଏବଂ ନିଶା ଗୋଟିଏ।

ଦିନକର ଘଟଣା ଇନ୍ଦୁମତୀଙ୍କ ସ୍ୱାସ୍ଥ୍ୟରେ ଅବନତି ପରିଲକ୍ଷିତ ହେଲା। ଇନ୍ଦୁମତୀଙ୍କୁ ନେଇ ରମେଶବାବୁ ନିକଟରେ ଥିବା ସ୍ୱର୍ଣ୍ଣ ନର୍ସିଂହୋମରେ ଚିକିତ୍ସା କରାଇଲେ ସତ, କିନ୍ତୁ ଇନ୍ଦୁମତୀଙ୍କୁ ହୋଇଥିବା ପାରାଲିସିସ୍ ରୋଗପାଇଁ ଜଣେ ପରିଚାରିକା ତଥା ଦେଖାଶୁଣା କରିବା ମହିଳାଙ୍କ ଆବଶ୍ୟକତା ପଡ଼ିଲା। ରମେଶ ବାବୁ ଏବଂ ତାଙ୍କ ଧର୍ମପତ୍ନୀ ଉଭୟ ଚିନ୍ତିତ ହୋଇ ଦିନେ କ୍ୱାର୍ଟରର ବଗିଚାରେ ପଡ଼ିଥିବା ଚେଆରରେ ବସି ମାଆଙ୍କ ସ୍ୱାସ୍ଥ୍ୟ ବିଷୟରେ ବିଚାରବିମର୍ଶ କରିବା ସମୟରେ ପୌଷମାସର ପୂର୍ଣ୍ଣମୀଚାନ୍ଦ ଆକାଶରେ ତୋଫା ଉଜ୍ଜ୍ୱଳକିରଣ ବିକିରଣ କରିଥିଲା। ଠିକ୍ ଏତିକି ବେଳେ ସ୍ନେହଲତା ଆସି ହାଜରହେଲା। "ମାଆ ନମସ୍କାର! ବାବୁ ନମସ୍କାର!" କହି ଆତ୍ମୀୟସ୍ୱଜନସ୍ୱରୂପ ପ୍ରଶ୍ନକଲା, "କ'ଣ ଚିନ୍ତା କରୁଛନ୍ତି ମାଆ? ଯଦି କିଛି ସଙ୍କୋଚ ନକରନ୍ତି ତେବେ

ମୋତେ କୁହନ୍ତୁ! ଯଦି ମୁଁ ଏପରି ପଚାରି କିଛି ଭୁଲ କରିଛି ତେବେ ମୋତେ କ୍ଷମା କରିଦିଅନ୍ତୁ।" ମୁଁ ଚାଲିଯିବି, ତେଣେ ରୋଷେଇ କରିବାର ଅଛି, ପୁଅ ଶଶାଙ୍କ ଟିଉସନ ସାରି ଫେରୁଥିବ। ମଣିଷ ଜୀବନର ଚିତ୍ରପଟର ବିନ୍ଧାଣି ସ୍ୱୟଂ ପରମାତ୍ମା ସେ କେତେବେଳେ ନିଜ ସ୍ୱଜନଙ୍କୁ ଯୋଜନ ଯୋଜନ ଦୂରକୁ ପଠାଇଦିଅନ୍ତି, ତ ଆଉ କେତେବେଳେ ଅଚିହ୍ନା ଅପରିଚିତକୁ ନିଜର ଆତ୍ମୀୟସ୍ୱଜନଙ୍କ ଭଳି ପାଖକୁ ଡକାଇଥାନ୍ତି। ଉଭୟ ସ୍ୱାମୀ ଏବଂ ସ୍ତ୍ରୀଙ୍କ ଚିନ୍ତାରେ ପୂର୍ଣ୍ଣଛେଦ ପଡିଲା । ସତେ ଯେମିତି ଖୋଜୁଥିବା ଦ୍ରବ୍ୟଟିଏ ନିଜ ହାତ ପାହାନ୍ତାରେ ମିଳିଗଲା। ଉଭୟେ ସ୍ନେହଲତାକୁ ପାଖରେ ଖାଲି ପଡିଥିବା ଚେୟାରରେ ବସିବାକୁ କହିଲେ। ରମେଶ ବାବୁଙ୍କ ପତ୍ନୀ କହିଲେ "ବୁଝିଲୁ! ସ୍ନେହ ମାଆଙ୍କ ଦେଖାଚାହାଁ ପାଇଁ ଜଣେ ନିହାତି ଆବଶ୍ୟକ। ଯିଏ ମାଆଙ୍କ ଲୁଗାପଟା ସଫା କରିଦେବ। ମାଆଙ୍କୁ ଖଟରୁ ଯତ୍ନସହକାରେ ଓହ୍ଲାଇଦେବ ଏବଂ ତାଙ୍କୁ ଓଦା ଟାଓ୍ୱେଲରେ ପୋଛାପୋଛି କରି ସ୍ନାନ ତଥା ଶୌଚ କାର୍ଯ୍ୟରେ ସାହାଯ୍ୟ କରିବ। ତୋ ନଜରରେ କେହି ମହିଳା ଅଛି, ଯିଏ ମୋ ଶାଶୁଙ୍କ ଦେଖାଚାହାଁ କରିବ ? କାରଣ ମୁଁ ରୋଷେଇବାସ ସହ ଯାଙ୍କ କଥା ବୁଝୁବୁଝୁ ନୟାନ୍ତ ହେଇଯାଉଛି। ସ୍ନେହଲତାର ମୁହଁରେ ନିଷ୍କପଟ ମୃଦୁ ହସ। ସେ ତତ୍କ୍ଷଣାତ ଉତ୍ତର ଦେଲା ମୁଁ ଅଛି ନା। ଆପଣମାନେ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ। ସକାଳ ବେଳା ପୁଅ ଆଉ ଶ୍ରୀଧର ଦୁହିଁଙ୍କୁ ସ୍କୁଲ ଆଉ ଅଫିସ ପଠାଇସାରିବା ପରେ ସମୟ ଆଜବେଷ୍ଟସ୍ ରୁମ୍ ଭିତରେ ବିତାଉଛି । ତାଛଡା ମାଆ ତ ଡେରିରେ ଉଠୁଛନ୍ତି । ବିଛଣା ଛାଡିବା ସମୟରେ ମୁଁ ଆସି ହାଜର ହେଇଯିବି। ଅବ୍ୟକ୍ତ ବେଦନାର ଉପଶମ ହେଲା । ଇଞ୍ଜିନିୟର ଦମ୍ପତି ଆଶ୍ୱସ୍ତ ହେଲେ।

ପରଦିନ ସକାଳର ସୂର୍ଯ୍ୟ ଉଭୟ ପରିବାର ମଧ୍ୟରେ ସତେ ଯେମିତି ଜନ୍ମଜନ୍ମାନ୍ତର ଋଣ ଶୁଝାଶୁଝି ହେବାର ସମୟ ସାଥିରେ ଧରି ଆସିଲା। ସ୍ନେହଲତା ନିରବଚ୍ଛିନ୍ନ ଭାବରେ ପ୍ରତ୍ୟେକ ଦିନ ଠିକ୍ ସକାଳ ଦଶଟା ବା ସାଢେ ଦଶଟା ସୁଦ୍ଧା ଆସି ଇଞ୍ଜିନିୟର ରମେଶବାବୁଙ୍କ ଘରେ ହାଜର ହୋଇଯାଏ। ଇନ୍ଦୁମତୀଙ୍କୁ ବିଛଣାରୁ ଉଠାଇ ତାଙ୍କର ନିତ୍ୟକର୍ମ କରିବାରେ ପର୍ଯ୍ୟାପ୍ତ ସହାୟତା କରେ। ସବୁ ବିଧିର ବିଧାନ ଭଳି ଚାଲିଥିଲା। ମାସ ପରେ ମାସ ବଢି ଚାଲିଲା। ହଠାତ୍ ଦିନେ ସବୁ ଓଲଟପାଲଟ ହୋଇଗଲା । ସ୍ନେହଲତା ପୂର୍ବବତ ଆଉ ଇଞ୍ଜିନିୟର ରମେଶବାବୁଙ୍କ ଘରଦ୍ୱାର ମାଡିବା ବନ୍ଦ କରିଦେଲା। ପଛପାଖ ଆଉଟ ହାଉସ୍‌ରେ ଦୁଇତିନି ଦିନ ବିତିଯିବା ପରେ ରମେଶବାବୁଙ୍କ ସ୍ତ୍ରୀ ଯାଇ ପହଞ୍ଚି ସ୍ନେହଲତାକୁ ଆଜବେଷ୍ଟସ୍ ରୁମ୍‌ରେ ଖୋଜିଲେ। ପୁଅ ଶଶାଙ୍କ ବସି ତାର ପଢାବହିରେ ଧ୍ୟାନ କେନ୍ଦ୍ରୀଭୂତ କରୁଥିଲା, ହଠାତ ନାରୀ କଣ୍ଠସ୍ୱର ଶୁଣି କବାଟ

ଖୋଲି ଦେଖେତ ସାହୁ ମ୍ୟାଡାମ ଆସିଛନ୍ତି। ମାଆ କୁଆଡେ ଯାଇଛନ୍ତି ପଚାରିବା ପରେ, ଲୁହ ଜକେଇ ଆସୁଥିବା ନୀରିହ ଦୃଷ୍ଟିରେ ଶଶାଙ୍କର ସଂକ୍ଷିପ୍ତ ଉତ୍ତର ଥିଲା, "ବାପା ହସ୍ପିଟାଲରେ ଯମ ସହ ଲଢୁଛନ୍ତି। ଦୁଇଦିନ ତଳେ ଖୋର୍ଦ୍ଧା ବାଇପାସରେ ଆସୁଥିବା ସମୟରେ ତାଙ୍କ ଉପରେ ନିର୍ମାଣାଧୀନ ବ୍ରିଜଟି ଭୁଷୁଡି ପଡିଲା। ସେ ଗୁରୁତର ଅବସ୍ଥାରେ ହସ୍ପିଟାଲରେ ପଡିଛନ୍ତି। ସେହି ଦିନଠାରୁ ମାଆ ତାଙ୍କ ପାଖରେ ରହୁଛି।" ସୁନନ୍ଦାଙ୍କ ପାଦତଳୁ ସତେ ଯେମିତି ପୃଥିବୀଟା ହଟିଗଲା। ସେ ନିଜ କ୍ୱାର୍ଟରକୁ ଫେରି ଚିନ୍ତା କଲେ ବିଗତ ଦୁଇ ଦିନରୁ ରମେଶବାବୁଙ୍କ ହତୋତ୍ସାହଜନିତ ବିମର୍ଷର କାରଣ ଏବଂ ତାର ଜଘନ୍ୟ ପରିଣତି। ଯେଉଁ ବ୍ରିଜ୍‌ଟି ଭୁଷୁଡି ଥିଲା ତା'ର ମୁଖ୍ୟ ଯନ୍ତ୍ରୀ ଥିଲେ ଇଞ୍ଜିନିୟର ରମେଶ ଏବଂ ଯେଉଁ ଠିକାଦାର ସେ କାମ ନେଇଥିଲା ସେ ମଧ୍ୟ ରମେଶଙ୍କ ଘନିଷ୍ଠ ବନ୍ଧୁ। ଦୁଇ ଦିନତଳେ ଏ ସମ୍ବାଦ ପ୍ରମୁଖ ଟି.ଭି ଚ୍ୟାନେଲଗୁଡିକ ସହ ସମ୍ବାଦପତ୍ରରେ ମୁଖ୍ୟ ସମ୍ବାଦରୂପେ ପ୍ରକାଶ ପାଇଥିଲା।

ନିର୍ମାଣାଧୀନ ବ୍ରିଜ ଭୁଷୁଡିବାପରେ ପୂର୍ତ୍ତବିଭାଗର ସଚିବ ଏବଂ ମୁଖ୍ୟମନ୍ତ୍ରୀ ଏହି ପୋଲ ନିର୍ମାଣକୁ ନେଇ ହୋଇଥିବା ପିସି ଏବଂ ନିମ୍ନମାନର କାର୍ଯ୍ୟଶୈଳୀର ତଦନ୍ତ ନିମିତ୍ତ ଆଦେଶ ଦେଇଥିଲେ। ରମେଶବାବୁ ଯେହେତୁ ମୁଖ୍ୟଯନ୍ତ୍ରୀ, ସେ ତଦନ୍ତ ପରିସରର ମୁଖ୍ୟ ଚରିତ୍ର। ସୁନନ୍ଦା ନିଜ ଶାଶୁଙ୍କ ସେବା ନିଜେ କରିବେ ବୋଲି ସଂକଳ୍ପ କଲେ । କିନ୍ତୁ ଗୋଟିଏ କଥା ତାଙ୍କ ମନକୁ ଅସ୍ଥିର ଏବଂ ବିବ୍ରତ କଲା ତାହା ହେଲା, ନିଜସ୍ୱାମୀ ବିପଥଗାମୀ ହୋଇ ପିସି ନେଇ ଯେଉଁ କର୍ମକଲେ ତା'ର ପରିଣାମସ୍ୱରୂପ କ'ଣ ହେବ ? ସେ ଜେଲ୍‌ଗଲେ, ସସ୍‌ପେଣ୍ଡ ହେଲେ, "ପରିବାର ଉପରେ ଯେଉଁ ବଜ୍ର ଚଡ଼କ ପଡ଼ିବ, ସେଥିପାଇଁ କିଏ ଦାୟୀ ହେବ।" ରାତି ପାହିଲେ ସରକାରୀ ଟେଣ୍ଡର କାମରେ ପିସି କାରବାର ସହ ଦୁର୍ନୀତି ସତେ ଯେମିତି ପୋଲ ଭୁଷୁଡିବା ଠାରୁ ପରିବାରର ଭସ୍ମସ୍ତୂପ ନିମିତ୍ତ ଗୋଟିଏ ସର୍ବଗ୍ରାସୀ ରସାତଳଗାମୀ ସମାଜ ଉପରେ ପ୍ରଚଣ୍ଡ ଭୂମିକମ୍ପର ଦାରୁଣ ଆଘାତ। ରାସ୍ତା, ପୋଲ ନିର୍ମାଣ ପାଇଁ କୋଟି କୋଟି ଟଙ୍କା ସରକାର ଖର୍ଚ୍ଚ କରନ୍ତି କିନ୍ତୁ ଅଦ୍ଭୁତ ବିସ୍ମୟକର ଦୁଃଖକୁ ଅନୁସରଣ କରନ୍ତି ସେ କାର୍ଯ୍ୟରେ ନିୟୋଜିତ ଥିବା ବ୍ୟକ୍ତି ବିଶେଷ। ଆଜି ଯଦି ସ୍ନେହର ସ୍ୱାମୀ ମରିଯାଏ, ତେବେ ତା'ର ପରିବାରଟି ଯେଉଁ ସାଂଘାତିକ ପରିସ୍ଥିତିକୁ ସାମ୍ନାକରିବ ତା'ସହ ରମେଶବାବୁଙ୍କ ମାଆ ମଧ୍ୟ ଯେଉଁ ବ୍ୟାଧିଗ୍ରସ୍ତ ଜୀବନ ବିତାଉଛନ୍ତି ତା'ର ଉପଶମ ସହଜସାଧ୍ୟ ନୁହେଁ। ଏକ ଅଭାବିତ ଅନୁଭବରେ ସେ ଆଖିରୁ ଲୁହ ଝରାଇଲେ। ସାମ୍ନାରେ ଉଦ୍‌ଭାସିତ ଦିବସର ଆଭା ମଧ୍ୟ ଆସ୍ତେ ଆସ୍ତେ ଅନ୍ଧାରିଆ ହୋଇଗଲା।

ତା' ପରଦିନର ସୂର୍ଯ୍ୟୋଦୟ ହେଲା। ସୁନନ୍ଦା କ୍ୱାର୍ଟର ପଛପଟ ଆଉଟ୍ ହାଉସ୍ ଆଡେ ପାଦବଢାଇଲେ, ଉଦ୍ଦେଶ୍ୟ 'ଶ୍ରୀଧର'ର ସ୍ୱାସ୍ଥ୍ୟାବସ୍ଥା କିପରି ଅଛି ବୁଝିବେ। ସ୍ନେହ ମୁହଁରେ କଥା ନାହିଁ। ଗାଲରେ ହାତଦେଇ ସେ ମୁହଁପୋତି ବସିଥିଲା।

ସୁନନ୍ଦାଙ୍କୁ ଚାହିଁ ଚିତ୍କାରକଲା, ଯାଉଥିବା ଲୋକମାନେ ଶୁଣିବାକୁ ପାଇଲେ "ମାଆ" ସବୁ ସରିଗଲା—— ମାଆ ସବୁ ସରିଗଲା ———— ମୁଁ ଭାସିଗଲି ———————— ମାଆ ଭାସିଗଲି।



# ପରିବର୍ତ୍ତନ

ଡିସେମ୍ବର ମାସ ଆରମ୍ଭରୁ ହାଡଥରା ଶୀତ ଆସିଛି। ସହରରେ ଯେଉଁ ଯେଉଁ ରାସ୍ତାକଡରେ ଅଳ୍ପକିଛି ଘାସଗାଲିଚା ଭଳି ଶୋଭାପାଇ ଟ୍ୱିନ୍‌ସିଟିରେ ନିଜର ଅସ୍ତିତ୍ୱକୁ ଜାହିର କରୁଛି, ସେଠି ରଙ୍ଗବେରଙ୍ଗର ଘାସଫୁଲ ସଜେଇହୋଇ ଫୁଟିଛି। କେଉଁଠି କେଉଁଠି ଘାସଉପରେ କାକରବିନ୍ଦୁ ଉପରେ ସୂର୍ଯ୍ୟକିରଣ ପଡି ଝଲମଲ୍ ମଧ କରୁଛି।

ଅନନ୍ତନାରାୟଣ ସୁଦୂର ବାଲେଶ୍ୱରରୁ ଆସି ଭୁବନେଶ୍ୱରରେ ଗତରାତିରେ ପହଞ୍ଚିଥିଲେ। ସାଙ୍ଗରେ ପୁଅ ତୁଷାର ଓ ଧର୍ମପତ୍ନୀ ବିନ୍ଦୁରେଖା ମଧ ଆସିଥିଲେ। ସାନଭାଇ ଅବିନାଶ ଭୁବନେଶ୍ୱରରେ ନିଜର ଘରଟିଏ ତିଆରି କରି ସପରିବାର ରହୁଛି। ଏଇ ଧାନକଟା ଛୁଟିରେ ପ୍ରାୟତଃ ଅନନ୍ତ ନିଜର ସପରିବାର ଧରି ଆସି ଭୁବନେଶ୍ୱରରେ ବେଶ ଆଠ-ଦଶ ଦିନ ଭାଇଘରେ ରହି ବାଲେଶ୍ୱର ଫେରିଥାନ୍ତି। ବାଲେଶ୍ୱର ମୁଖ୍ୟ ଡାକଘରେ ସେ ପୋଷ୍ଟାଲ୍ ସୁପରିଟେଣ୍ଡେଣ୍ଟ ପୋଷ୍ଟରେ କାର୍ଯ୍ୟରତ। ବେଶ ସାହିତ୍ୟ – ସଂସ୍କୃତି ସଂପନ୍ନ ସ୍ୱଭାବ। ତେଣୁ ସେ ଓଡିଶାର ବେଶ ଜଣାଶୁଣା କବି ଓ ଲେଖକଙ୍କର ଉପନ୍ୟାସ, ଗଳ୍ପ ଓ କବିତା ବହିଗୁଡିକ କିଣିଆଣି ପଢିଥାନ୍ତି। ସାହିତ୍ୟ ପତ୍ରିକା ମଧ କିଛି କିଛି ସଂଗ୍ରହ କରିଥାନ୍ତି। ସେ ଜଣେ ସାଧାସିଧା ସ୍ୱଭାବର ବ୍ୟକ୍ତି। ଗଳ୍ପ, ସାହିତ୍ୟ, ପ୍ରବନ୍ଧ ପଢି ସେ ବେଶ୍ ଆନନ୍ଦ ପାଇଥାନ୍ତି। କେନ୍ଦ୍ର ସରକାରଙ୍କ ଅଧିନରେ ଚାକିରୀ କରି ଭାବିଥିଲେ, ବୃତ୍ତିସହ ସାହିତ୍ୟକୁ ପ୍ରବୃତ୍ତି କରିବେ। କିନ୍ତୁ 'ଭାଗ୍ୟର ବିଡମ୍ବନା, ସେ ରୁଚିସଂପନ୍ନ ପାଠକଟିଏ ସମାଲୋଚକଟିଏ ସିନା ହୋଇପାରିଲେ, କିନ୍ତୁ ସାହିତ୍ୟ, ଲେଖାଲେଖିରେ ସଫଳ ହୋଇପାରିଲେ ନାହିଁ। ସେ ଚାକିରୀ କରିବା ଦିନଠାରୁ ମନରେ ଗୋଟିଏ ଆଶା ପୋଷଣ କଲେ ଯେ, ଯଦି ନିଜେ ଲେଖା-ଲେଖିକରି କବି, ଲେଖକ ଅବା ଗୀତିକାରଟିଏ ନହୋଇପାରିଲେ ନାହିଁ, ସାନଭାଇ ଅବିନାଶକୁ ସାହିତ୍ୟାନୁରାଗୀ ଲେଖକଟିଏ ନିଶ୍ଚିତ କରିବେ।

ଅବିନାଶ ବଡ଼ଭାଇ ଅନନ୍ତଙ୍କ ତତ୍ତ୍ୱାବଧାନରେ ମ୍ୟାଟ୍ରିକ୍, ଆଇଏସ୍‌ସି ଓ ପରେ ବିଏସ୍‌ସି ପଢିଥିଲା। ପରେ ଅଧିକ ଶିକ୍ଷାପାଇଁ ଏମ୍‌ଏସ୍‌ସି ପାଠ୍ୟକ୍ରମରେ ସିନା ନାମ

ଲେଖାଇଲା କିନ୍ତୁ, ଚାକିରୀ ନିମିତ୍ତ ପ୍ରତିଯୋଗିତା ଭୀଷଣ ତୀବ୍ର ଓ ଅନିଶ୍ଚିତତାର ବଳୟ ମଧ୍ୟରେ ଓଡିଶାର ଯୁବସମାଜକୁ ଲକ୍ଷ୍ୟ ପଥରୁ ଯେ ବିଚ୍ୟୁତ କରିଦେଇଛି ମର୍ମେମର୍ମେ ଅନୁଭବ କରିଥିଲେ। ଏଣୁ ବିଭିନ୍ନ ବ୍ୟାଙ୍କରେ ବାହାରୁଥିବା ଭିନ୍ନଭିନ୍ନ ପୋଷ୍ଟ୍‌ର ଚାକିରୀ ପାଇଁ ହେଉଥିବା ଲିଖିତ ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରିବା ସହ ସ୍ନାତକୋତ୍ତର ପରୀକ୍ଷା ପାଇଁ ମଧ୍ୟ ଲାଗିପଡିଲା। ଷ୍ଟେଟ ବ୍ୟାଙ୍କ ଅଫ୍ ଇଣ୍ଡିଆର ପ୍ରୋଭିଜିଓନାରୀ ଅଫିସର୍ ପାଇଁ ହେଉଥିବା ଲିଖିତ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଭୁବନେଶ୍ୱରରେ ପୋଷ୍ଟିଙ୍ଗ ମଧ୍ୟ ହୋଇଗଲା।

ବଡଭାଇ, ବାପା, ମା ଓ ପରିବାରର ଅନ୍ୟାନ୍ୟ ସଦସ୍ୟ ଅତ୍ୟନ୍ତ ଆନନ୍ଦସହକାରେ ଅବିନାଶର ଚାକିରୀ ଜୀବନର ଶୁଭ ମନାସିଲେ।

ଆଜିକାଲି ଓଡିଶାରେ ଓଡିଆ ବହି ଖଣ୍ଡେ କିଣିବାର ମୋହ ଅବା ପଢିବାର ମୋହ ପ୍ରାୟତଃ ଲୋକଙ୍କ ଭିତରେ ନାହିଁ। ସାହିତ୍ୟ ଜଗତରେ ପାଠକଙ୍କ ମରୁଡି। କ୍ୱଚିତ୍ ଲୋକ ଆଗ୍ରହର ସହକାରେ ଓଡିଆ ବହି କିଣୁଛନ୍ତି ଓ ପଢୁଛନ୍ତି। ଏଭଳି ଅଭାବନୀୟ ସମୟରେ ବର୍ଷବର୍ଷ ଧରି ଓଡିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ଯେଉଁ କ୍ୱଚିତ୍ ବ୍ୟକ୍ତି ଗୁଣ୍ଡୁଚିମୂଷାର ଚିନ୍ତାଧାରାରେ ସାହିତ୍ୟସେତୁ ନିର୍ମାଣ ପାଇଁ ଅଣ୍ଟାସଳଖି ମଙ୍ଗ ଧରିଛନ୍ତି ସେମାନଙ୍କ ଭିତରେ ଅନନ୍ତବାବୁ ଅନ୍ୟତମ। ସେ ଅବିନାଶ ପାଇଁ ପ୍ରମୁଖ ସାହିତ୍ୟ ପତ୍ରିକା ସବୁ ବାର୍ଷିକ ଗ୍ରାହକ ହିସାବରେ ମଗାଇ ଦେଇଛନ୍ତି। ବଛାବଛା ଲେଖକ ଲେଖିକାଙ୍କର ଗଳ୍ପ, ଉପନ୍ୟାସ ବହି ସହ କବିତା ପୁସ୍ତକଗୁଡିକ କଟକର ବାଲୁବଜାରରୁ ନିଜେଯାଇ ସଂଗ୍ରହ କରି ଆଣିଛନ୍ତି।

ଅବିନାଶ ହାଇସ୍କୁଲ ଓ କଲେଜରେ ପାଠ ପଢିଲା ସମୟରେ କିଛିକିଛି ଗଳ୍ପ ଓ କବିତା ଲେଖି ବାର୍ଷିକ ମାଗାଜିନ୍ ପାଇଁ ଦେଉଥିଲେ। ସ୍ୱରଚିତ ଗଳ୍ପରେ ଅବିନାଶଙ୍କ ସର୍ଜନଶୀଳତା ନିଆରା ବାରି ହୋଇଯାଉଥିଲା। କବିତାରେ ଲାଳିତ୍ୟ ଥିଲା। ତା'ଙ୍କ କବିତାରେ ମୋହଗ୍ରସ୍ତ ମଣିଷକୁ ମନ୍ତ୍ରମୁଗ୍ଧ କରିବାରେ ସକ୍ଷମ ମଧ୍ୟ ଥିଲା।

ସୁଗନ୍ଧ ଫୁଲଗଛର ଭୁରୁଭୁରୁ ବାସ୍ନା, ନଦୀର କୁଳୁକୁଳୁ ନାଦ, ବିଶାଳ ସମୁଦ୍ରର ନୀଳିମା, ରଙ୍ଗୀନ ପ୍ରଜାପତି, ରଙ୍ଗୀନ ଫୁଲ, ଆକାଶର ନୀଳିମା, ଶୀତଳ ଜହ୍ନ, ସୂର୍ଯ୍ୟାସ୍ତ ବେଳାର ନାଲିରଙ୍ଗ, ଅନ୍ଧାର ରାତିର ଚିକିମିକି ତାରା ସେସବୁ ପ୍ରକୃତିର ଦାନ। ଭଗବାନଙ୍କ ସୃଷ୍ଟିର ଅପୂର୍ବ ଆନନ୍ଦଦାୟକ ମୂଲ୍ୟବାନ ଅବଦାନ। ଅବିନାଶର ସାହିତ୍ୟସୃଷ୍ଟି ମଧ୍ୟ ଈଶ୍ୱରଙ୍କ ଦାନଭଳି ଦିନକୁଦିନ ବହୁଗୁଣିତ ହୋଇଉଠିଲା। କଥାରେ ଅଛି ଯଦି

ଈଶ୍ୱରଙ୍କ କୃପାଥାଏ ତେବେ ମଣିଷ ବହୁତକିଛି ହୋଇପାରେ। ଅବିନାଶ ମଧ୍ୟ ସେହି ଈଶ୍ୱରଦତ୍ତ ପ୍ରତିଭାରେ ଦିନକୁଦିନ ଦୀପ୍ତିବନ୍ତ ହୋଇଉଠିଲା।

ଅବିନାଶଙ୍କ ଇତି ମଧ୍ୟରେ ଚାକିରିକାଳ ତିନିବର୍ଷ ପୂରି ଚାରିବର୍ଷରେ ପହଞ୍ଚିଲାଣି। ନିଜ ସ୍ୱଅର୍ଜିତ ଟଙ୍କାରେ ସେ ତିନୋଟି ସ୍ୱରଚିତ ପୁସ୍ତକ ମଧ୍ୟ ପ୍ରକାଶ କରିସାରିଲାଣି। ଗଳ୍ପ, ଉପନ୍ୟାସ ଓ କବିତା ଏହି ତିନିବିଭାଗରେ ପ୍ରକାଶିତ ବହିଗୁଡିକ ମଧ୍ୟ ବେଶ୍ ପାଠକୀୟ ସ୍ୱୀକୃତି ପାଇଛି। ତାର ଗଳ୍ପ ଅବା କବିତା ଯେଉଁଦିନ ଓଡିଶାର ପ୍ରମୁଖ ସମ୍ବାଦପତ୍ରଗୁଡିକରେ ପ୍ରକାଶ ପାଏ ସେ ଯେଉଁ ପରିମାଣରେ ଉତ୍‌ଫୁଲ୍ଲିତ ହୁଏ ସେ ଆନନ୍ଦ ଦ୍ୱିଗୁଣିତ ହୋଇଯାଏ; ଯେତେବେଳେ ପାଠକମାନେ ତାର ଲେଖା ଓ ଲେଖାରେ ଥିବା ସମାଜ ଉପଯୋଗୀ ସନ୍ଦେଶକୁ ଉପଲବ୍ଧିକରି ତାକୁ ଧନ୍ୟବାଦ ପ୍ରଦାନ କରିଥାନ୍ତି।

ବର୍ତ୍ତମାନ ଓଡିଶାର ସୁନାମଧନ୍ୟ ଯୁବ ସାହିତ୍ୟିକଙ୍କ ଭିତରେ ଅବିନାଶର ନାମ ମିଶିଯାଇଛି। ଅନନ୍ତବାବୁ ଭାଇର ଏହି ସଫଳତାକୁ ନେଇ ବେଶ୍ ଆନନ୍ଦିତ, ଆହ୍ଲାଦିତ। ସମ୍ବାଦପତ୍ରରେ ହେଉ ଅବା ଟିଭିପରଦାରେ ହେଉ, ଅବିନାଶର ପୁସ୍ତକ ସମୀକ୍ଷା ପଢି ଅବା ଗଳ୍ପ କବିତା ପଢି କିମ୍ବା ଟିଭିରେ ସାହିତ୍ୟାଲୋଚନାରେ ଅବିନାଶକୁ ଦେଖି ନିଜର ଚିହ୍ନାପରିଚିତଙ୍କ ଗହଣରେ ଭାଇର ପ୍ରଶଂସା କରିବାର ଦେଖିବାକୁ ମିଳୁଛି।

ଗତବର୍ଷ ଭଳି ଏ ବର୍ଷ କରୋନାର ଭୟାତୁର ପରିବେଶ ସଙ୍କଟଜନକ ପରିସ୍ଥିତି ସମାଜରୁ ହଟିଯାଇନାହିଁ, କିନ୍ତୁ ଅନେକ ପରିମାଣରେ ହ୍ରାସପାଇଛି। ଅନନ୍ତ ପୂର୍ବବତ୍ ଡିସେମ୍ବର କୋଡିଏ ତାରିଖରେ ବାଲେଶ୍ୱରରୁ ସପରିବାର ଆସି ଅବିନାଶ ଘରେ ପହଞ୍ଚିଲେ। ଅବିନାଶ, ତା'ର ପତ୍ନୀ, ପୁଅ ସମସ୍ତେ ଖୁସି ହେଲେ। ପୁଅ କହିଲା, "ଗତବର୍ଷ ଲକ୍‌ଡାଉନ୍ ଓ ସଟ୍‌ଡାଉନ୍‌ର ଚାପରେ ପଡି ବଡବାପା ଭୁବନେଶ୍ୱର ଆସିନଥିଲେ। ଯାହା ହେଉ କରୋନା ହଟହଟା ଟଳିବା ଆରମ୍ଭ କରିଛି।" (ଝିଅ ତା'କଥାରେ ସହମତ ନହୋଇ କହିଲା, "ଆରେ ବୁଦ୍ଧୁ, କରୋନା ସିନା କମିଛି କିନ୍ତୁ ଓମିକ୍ରନତ ତାର କାୟା ବିସ୍ତାର କରୁଛିନା ?")

ଦିନେ ସନ୍ଧ୍ୟାରେ ଅନନ୍ତଭାଇ ଅବିନାଶକୁ କହିଲେ, "ମୋର ପି.ଏମ୍.ଜି ଅଫିସ୍‌ରେ କିଛି ଅଫିସିଆଲ କାମଅଛି। ତୁ ମୋତେ ସାଙ୍ଗରେ ନେଇ ଆସନ୍ତାକାଲି ସକାଳ ଦଶଟାରେ ସେଠାରେ ପହଞ୍ଚାଇଦେବୁ। ଅବିନାଶ ରାଜି ହେଲା। କହିଲା ମୁଁ ଏଇ ବର୍ଷର କିଛି ବାକିଆ ଛୁଟି ମଞ୍ଜୁର କରିସାରିଛି। ମୁଁ ତୁମକୁ ପି.ଏମ.ଜି ଅଫିସ୍ ସାଥିରେ ନେଇଯିବି। ଉଭୟ ସ୍ଥିରକଲେ ଘରେ ଜଳଖିଆ ଖାଇସାରି ଆସନ୍ତାକାଲି ସକାଳେ ପି.ଏମ୍.ଜି ଅଫିସ୍ ଯିବେ।

ରାଜଧାନୀର ରାଜରାସ୍ତାରେ ଦିନ ଦଶଟା ବାଜିଲେ ଗାଡିମଟରର ଭିଡ ଜମେ। ଯିଏ ଯାହାର କାମଦାମରେ ସତେ ଯେମିତି ଅଣନିଶ୍ୱାସୀ ହୋଇ ଧାଇଁଥାନ୍ତି ନିଜର ଜୀବନଜୀବିକା ପାଇଁ ସଂଗ୍ରାମ କରିବାକୁ। ଦିନଦଶଟା ତିରିଶ ମିନିଟ୍‌ରେ ଅଫିସ ଆଗରେ ପହଞ୍ଚି ଦୁଇ ଭାଇ ପହଞ୍ଚିଲେ ମୋଟର ସାଇକେଲକୁ ପାର୍କିଂ ସ୍ଥାନରେ ରଖିବେ। ଯିଏ ଯାହାର ହେଲ୍‌ମେଟକୁ ହାତରେ ଧରି ଅଫିସର ଦ୍ୱିତୀୟ ମହଲାକୁ ଗଲେ। ଅନନ୍ତବାବୁ ନିଜର ଅଫିସ୍ ଫାଇଲ ଓ କାଗଜାତ ସାଙ୍ଗରେ ଧରିଥିଲେ। ଅଫିସରଙ୍କୁ ଭେଟି ଦେଖାଇବାର ପୂର୍ବପ୍ରସ୍ତୁତି ସମୟରେ ଅବିନାଶ ଚିନ୍ତାକଲା ମୋର ଏଠାରେ ବିଶେଷ କାମନାହିଁ। ଅନେକ ଦିନପରେ ପି.ଏମ୍.ଜି ଅଫିସ୍ କାମରେ ଆସିଛି। ଟିକିଏ ବାହାରକୁ ବାହାରିଯାଇ "ରବିନ୍ଦ୍ର ମଣ୍ଡପ", ଓଡିଶା ଲେଜିସ୍‌ଲେଟିଭ୍ ଆସେମ୍ଲି ସହ ୧୨୦ ଇନ୍‌ଫାନଟ୍ରୀ ବାଟାଲିଅନ୍‌କୁ ଲମ୍ବିଥିବା ରାସ୍ତା, ଇନ୍ଦିରାପାର୍କକୁ ଅଫିସ ହତାରେ ବୁଲିବା ସମୟରେ ନିରୀକ୍ଷଣ କରିବ। ଭାଇ ଅନନ୍ତଙ୍କଠାରୁ ଅନୁମତି ନେଇ ସିଡିବାଟଦେଇ ଆସି ପହଞ୍ଚିଲା ଇନ୍ଦିରାପାର୍କ ସମ୍ମୁଖରେ ଥିବା ଗେଟ୍ ପାଖରେ।

ସହରର ଚଳଚଞ୍ଚଳ ରାସ୍ତା, ଆସେମ୍ଲି ଉପରେ ଉଡୁଥିବା ତ୍ରିରଙ୍ଗା ପତାକା ସେକ୍ରେଟେରିଏଟ (ବର୍ତ୍ତମାନର ଜନସେବା ସଦନ) କୋଠାକୁ କିଛି ସମୟ ନିରୀକ୍ଷଣ କଲା। ସତେ ଯେମିତି କରୋନା ମହାମାରୀର ପ୍ରକୋପକୁ ଭ୍ରୂକ୍ଷେପ ନକରି ସମଗ୍ର ରାଜଧାନୀ ନୂତନ ବର୍ଷ ୨୦୨୨କୁ ସ୍ୱାଗତ କରିବାପାଇଁ ସମସ୍ତ ପ୍ରସ୍ତୁତି ସାରିଦେଇଛି। ୧୯୪୮ ମସିହାରେ ଭୁବନେଶ୍ୱରର ପୁରୁଣା ସହର ବଦଳି ନୂଆ ରାଜଧାନୀରୂପେ ସ୍ଥାପନ ହେବାପରେ ଅନେକ ପରିବର୍ତ୍ତନର ସୁଅରେ ପଡି ବର୍ତ୍ତମାନ ସ୍ମାର୍ଟସିଟିର ମାନ୍ୟତା ପାଇଛି। ଅବିନାଶ ପିଲାବେଳେ ଭୁବନେଶ୍ୱରରେ ନିଜ ମାମୁଁଙ୍କ ଘରକୁ ମଝିରେ ମଝିରେ ଆସି ଦେଖିଛି ଏ ସହରର ରାସ୍ତାଘାଟ, ହାତଟଣା ରିକ୍ସା, ପୁରୁଣା ବସ୍‌ଷ୍ଟାଣ୍ଡ ଆଉ ରେଳଷ୍ଟେସନର ଅନୁନ୍ନତ ସ୍ଥିତି। ବର୍ତ୍ତମାନ ସତେ ଯେମିତି ସବୁ ବ୍ୟବସ୍ଥିତ ରୂପରେ ରୂପାନ୍ତରିତ। ପ୍ୟାରେଡ ପଡିଆ ଆଜି ଇନ୍ଦିରାପାର୍କ। କଳିଙ୍ଗ ଷ୍ଟାଡିଅମରେ ପ୍ୟାରେଡ ଆୟୋଜନ ହେଉଛି। ଅବିନାଶ ଗୋଟିଏ ସିମେଣ୍ଟ ବେଞ୍ଚରେ ଯାଇ ବସିଲା। ପକେଟ୍‌ରୁ ମୋବାଇଲ ବାହାର କରି ହ୍ୱାଟ୍ସଆପ୍‌ରେ ଗୁଡମର୍ଣ୍ଣିଂ ମେସେଜ୍ ସବୁ ଦେଖିଲା। ଏସବୁ ଦେଖିବାର ଗୋଟିଏ ଅଭ୍ୟାସରେ ପରିଣତ ହୋଇଛି।

ଠିକ୍ ଏହି ସମୟରେ ବୃଦ୍ଧାଟିଏ ଅପରିଚ୍ଛନ୍ନ ମଳିନଶାଢୀଟିଏରେ ଯେନତେନ ପ୍ରକାରେ ଶରୀରଢାଙ୍କି ସାମାନ୍ୟ ନଇଁନଇଁ ଆସି ହାତପାତିଲା। କାମନା ଓ ଆଶାର ଆଲୋକରଶ୍ମି ତା ଆଖିରୁ ନିର୍ଗତ ହେଉଥିଲା। କାମନାରେ କିଛି ଅର୍ଥ ସାହାଯ୍ୟ ଆଶାଥିଲା

ଅବିନାଶ ତା'ର ଆଶାକୁ ପୂରଣ କରିବ। ଆଜିର କଳୁଷିତ ଓ ଉଦ୍‌ଭ୍ରାନ୍ତ ସାମାଜିକ ସ୍ଥିତିରେ ରାଜ୍ୟସରକାର ସହରାଞ୍ଚଳର ଗରିବ ଲୋକଙ୍କ ପାଇଁ ଅନେକ ଯୋଜନା କରିଛନ୍ତି। କିନ୍ତୁ ହତଭାଗା ବୃଦ୍ଧାଟି ନା ସରକାର ନା କୌଣସି ସ୍ୱେଚ୍ଛାସେବୀ ଅନୁଷ୍ଠାନଙ୍କ ଦୃଷ୍ଟିଗୋଚର ହୋଇପାରିଛି। ସାଧାରଣ ଗରିବ ଶ୍ରେଣୀଙ୍କର ଦୁର୍ବଳତାର ଫାଇଦା ଉଠାଇଥାନ୍ତି। ଆବଶ୍ୟକତା ପଡିଲେ ଅବା କ୍ଷମତା ଆପଣେଇବାକୁ ଇଛାକଲେ ଅନେକ ମିଛର ଆଶ୍ରୟ ନେଇଥାନ୍ତି। ମିଛିମିଛିକା ସ୍ନେହ, ଦରଦ, ମମତା ଓ ଆଖିରେ ଲୁହ ମଧ୍ୟ ଭରିଦିଅନ୍ତି। ମମତାର ଚାଦର ଆମ ଉପରେ ଘୋଡାଇ ଦିଅନ୍ତି। ପ୍ରତିଶ୍ରୁତିର ପାହାଡ ଆମ ଉପରେ ଲଦିଦିଅନ୍ତି। ଆମେ ତଳକୁ ଦବିଯାଉ। ସହରର ଗରିବ ବସ୍ତିବାସିନ୍ଦା ଭୁଲିଯାଏ, ଭଲ କ'ଣ ଆଉ ମନ୍ଦ କ'ଣ ? ତା' ପାଖରୁ ହଜିଯାଏ ସନ୍ଦେହ, ଅବିଶ୍ୱାସ ଓ ନିଜର ହକ୍। ସେ ସ୍ୱପ୍ନ ଦେଖେ, ସ୍ୱପ୍ନର ସୌଦାଗର ସାଜି ପ୍ରତିଶ୍ରୁତି ଦେଇଥିବା ମଣିଷଟି ଦିନେ ଆସନ ଓ ଶାସନ ଗାଦିରେ ବସିଗଲେ ଦେଇଥିବା ପ୍ରତିଶ୍ରୁତି ସବୁ ପାଣିଗାର ଭଳି ଉଭାନ ହୋଇଯାଏ।

ଯେଉଁ ଦରିଦ୍ରକୁ ସେହି ଦରିଦ୍ର ହୋଇ ରହିଯିବ ତାର ଜୀବନ। ଅବିନାଶ ବୃଦ୍ଧାର ରୂପରୁ ବେଶ ପରିପାଟୀରୁ ଠଉରାଇ ପାରିଥିଲା ତାର ଅସହାୟ ଅବସ୍ଥାକୁ। ଅବିନାଶ ବୃଦ୍ଧା ଉଦ୍ଦେଶ୍ୟରେ ପଚାରିଲା, "ମାଉସୀ ତୁମେ କ'ଣ ପାଇଁ ହାତପାତି ମାଗୁଛ ?" ତୁମର କଣ ପରିବାରରେ ପୁଅ, ଝିଅ କେହିନାହାନ୍ତି ? ଅଧିକ ପଚାରିବା ପୂର୍ବରୁ ଗୋଟିଏ ତିରିଶ ବର୍ଷିୟା ନାରୀ, ସାଙ୍ଗରେ ଗୋଟିଏ ଅଢେଇ ଅବା ତିନିବର୍ଷର ପୁଅକୁ କାଖେଇଧରି ଆସି ବୃଦ୍ଧା ନିକଟରେ ପହଞ୍ଚି, ମା'ବୋଲି ସମ୍ବୋଧନ କଲା ଓ ଆସ ଆମେ ଏଠୁ ଚାଲିଯିବା ବୋଲି କହିଲା।

ଅବିନାଶର ଜିଜ୍ଞାସା ବଢିଗଲା। ଏହି ସ୍ତ୍ରୀ ଲୋକ ଓ ତା ହାତରେ ଶିଶୁ, ଏଦୁହେଁ କଣ ବୃଦ୍ଧାଟିର ଝିଅ ଓ ନାତି। ସଭିଙ୍କ ବେଶ ଭିକାରୁଣୀଙ୍କ ଭଳି ଓ ସଭ୍ୟସମାଜକୁ ବିଦ୍ରୂପ କଲାଭଳି ଅବିନାଶକୁ ମନେହେଲା। ବୃଦ୍ଧା ମୁହଁ ତଳକୁ କରି ସମ୍ଭବତଃ ଆସୁଥିବା ଲୁହକୁ ଓ ହୃଦୟର କୋହକୁ ଲୁଚେଇବାକୁ ଯାଇ ଅବିନାଶକୁ କହିଲା, "ବାପା ! ଏ ଦୁହେଁ ସଂପର୍କରେ ମୋର ଝିଅ ଓ ନାତି। ମୋର ଝିଅ ଗୋଟିଏ ଅଟୋଚାଳକକୁ ଚାରିବର୍ଷ ତଳେ ବାହାହେବା ପରେ ନିର୍ଯ୍ୟାତନା ପାଇବା ଆରମ୍ଭ ହୋଇଗଲା। ପୁଅଟି ଜନ୍ମ କରିସାରିବା ପରେ ଶାଶୁଘରେ ମୋଝିଅ ଅଣନିଶ୍ୱାସୀ ହୋଇଗଲା। ଶାଶୁଘରେ ଆଉ ରହିପାରିଲା ନାହିଁ। ମୁଁ ତାକୁ ମୋ ପାଖକୁ ଆଣି ସେହିଦିନଠାରୁ ରଖିଛି। ମୋ ପାଖରେ ଧନ କଉଡି ଟଙ୍କାଥିଲେ ଝିଅର ଶାଶୁଘରକୁ ଯାଇ ଦାବି ମୁତାବକ ଟଙ୍କାଦେଇ

ଝିଅ ଓ ନାତିକୁ ସେଠି ଛାଡି ଆସିଥାନ୍ତି। ଆମେତ ହୀନକପାଳିଆ। ଝିଅ ଅବା କେଉଁ କପାଳିଆ ସୌଭାଗ୍ୟବତୀ ହୋଇପାରିବ ? ଭାଗ୍ୟକୁ ଆଦରି ରହିଛୁ। ହେଲେ ବାପା ତୁ ମୋ ବିଷୟରେ ଜାଣି କ'ଣ କରିପାରିବୁ ?"

ଜଟିଳ ପରିସ୍ଥିତିକୁ ସରଳ କରିବାର ଚେଷ୍ଟାରେ ଅବିନାଶ ମନରୁ ବାହାରି ଆସିଲା, "ମାଉସୀ ମୁଁ ଯଦି ଏଶିଶୁଟିର ସମସ୍ତ ଯତ୍ନନେଇ ତାର ଶିକ୍ଷାଦୀକ୍ଷା କଥା ବୁଝିବି ଆଉ ତୁମ ଝିଅକୁ ଗୋଟିଏ ସମାଜ ମଙ୍ଗଳ ସଂସ୍ଥା ସହାୟତାରେ କାମ ଯୋଗାଇଦେବି ତେବେ ତୁମେମାନେ ମୋତେ ସହଯୋଗ କରିବତ ? ସବୁ ସମସ୍ୟାର ସମାଧାନ ହୋଇଯିବ।"

ବୁଢୀଟିର ସୂକ୍ଷ୍ମ ମନସ୍ତତ୍ତ୍ୱରେ ବୋଧହୁଏ ସବୁ ଠିକ୍ ଓ ଅବିନାଶର ନିଃସ୍ୱାର୍ଥପର ଗୁଣ ତାର ଜୀବନ ସଂଘର୍ଷର ମାର୍ମିକ କାହାଣୀର ରୂପ ପରିବର୍ତ୍ତନ କରିଦେବ ବୋଲି ହୃଦବୋଧ ହେଲା। ସେ କିଛି ସମୟ ଝିଅଟିକୁ ଏକପାଖିଆ ସ୍ଥାନକୁ ଡାକି କ'ଣ ଆଲୋଚନା କଲା ଓ ଫେରିଆସି ଅବିନାଶ କଥାରେ ସହମତ ବୋଲି ଜଣାଇଦେଲା। ଅବିନାଶ ସେହି ଅସହାୟ ବୃଦ୍ଧାର ପରିବାରକୁ ସାହାଯ୍ୟ କରିବାର ପ୍ରଥମ ପଦକ୍ଷେପ ସ୍ୱରୂପ ଦୁଇଦିନ ପରେ ଆସି ସେହି ଅଫିସ୍ ହତାରେ ବୃଦ୍ଧାସହ ଭେଟିବ ବୋଲି କହିଲା। ଯଦି ତୁମର ଆଧାରକାର୍ଡ ଅବା ଭୋଟରକାର୍ଡ ଥିବ ତେବେ ସାଥୀରେ ଧରି ଆସିଥିବ ବୋଲି ବୁଝାଇ କହିଲା।

ଅବିନାଶର ଘନିଷ୍ଠବନ୍ଧୁ ଗୋଟିଏ ସ୍ୱେଚ୍ଛାସେବୀ ସଂସ୍ଥାର ପରିଚାଳନା ନିର୍ଦ୍ଦେଶକ। ଠିକ୍ ଏହି ସମୟରେ ଅବିନାଶର ମୋବାଇଲରେ ରିଂଗଟୋନ ବାଜିଉଠିଲା। ଅନନ୍ତବାବୁ ଅଫିସ୍‌ର ଦ୍ୱିତୀୟ ମହଲାରୁ ଥାଇ କହିଲେ "ମୁଁ ମୋଟରସାଇକେଲ ପାଖକୁ ଆସୁଛି ତୁ ସେଠାକୁ ଆସ।"

ଅବିନାଶ ମୋଟରସାଇକେଲ ପାଖାପାଖି ସ୍ଥାନରେହିଁ ବୃଦ୍ଧାଟି ସହ କଥାବାର୍ତ୍ତା ହେଉଥିଲେ । ଏଣୁ ଅନନ୍ତ ଆସି ପହଞ୍ଚିବା ପରେ ଦେଖିଲେ ଅବିନାଶ ବୃଦ୍ଧାସହ କଥାବାର୍ତ୍ତା ହେଉଛି। ଯେତେ ବେଳେ ଅବିନାଶ ମୋଟର ସାଇକେଲ ନିକଟକୁ ଆସିଲେ ବଡଭାଇ ଅନନ୍ତ ପଚାରିଲେ "କଥା କ'ଣ ? ସେ ବୃଦ୍ଧା ଭିକାରୁଣୀ ସହ କ'ଣ କଥା ହେଉଥିଲୁ ?"

ଅବିନାଶ ଭାଇ ଅନନ୍ତଙ୍କ ପାଖକୁ ଆସିଲା। ମୋଟର ସାଇକେଲ ବାହାରକରି ଘରକୁ ଫେରିବା ସମୟରେ ସମୟ ପାଖାପାଖି ଦିନ ବାରଟା ତିରିଶ୍ ମିନିଟ୍। ରାଜଧାନୀସ୍ଥିତ ଆସେମ୍ଲି ବିଧାନସୌଧ ସାମ୍ନା ରାସ୍ତାରେ ଭିଡ ଜମିଯାଇଥିଲା। ଭାଇ

ଅନନ୍ତଙ୍କ ପ୍ରଶ୍ନର ଉତ୍ତର ସେଇ ରାସ୍ତାରେ ଗାଡି ଧୀରଗତିରେ ସାବଧାନତା ସହ ଚଳାଇଫେରିବା ସମୟରେ ବୃଦ୍ଧା ଓ ତା'ର ସଂସାର ବିଷୟରେ ସଂକ୍ଷେପରେ ସବୁକଥା କହିଲା ।

ଅନନ୍ତ ଜାଣିଥିଲେ ମଣିଷ ଦୁଇପ୍ରକାରର ଜୀବନ ବଞ୍ଚେ। ସେ ଅବିନାଶ କଥା ଶୁଣି ଜାଣିପାରିଥିଲେ ଅବିନାଶ ଗୋଟିଏ ପ୍ରକାର ଜୀବନ ନିଜ ଜୀବନ ପାଇଁ ଓ ଅନ୍ୟପ୍ରକାରର ଜୀବନ ସମାଜପାଇଁ ଦେବାକୁ ଚାହୁଁଛି। ସମାନ୍ତରାଳ ଭାବରେ ଯିଏ ଲେଖକ, କବିର ଜୀବନ ସହ ନିଜ ଜୀବନ ଜୀବିକା ପାଇଁ ଚାକିରୀ କରିଛି ତା ପାଇଁ ଏଭଳି ନିଷ୍ପତ୍ତି କେତେଦୂର ଗ୍ରହଣୀୟ ? ସେ କ'ଣ ଏ ଦାୟିତ୍ୱ ସଠିକ୍‌ରୂପେ ନିଭେଇ ପାରିବ ? କେବଳ ଭାବପ୍ରବଣତାକୁ ନେଇ ବାସ୍ତବ ଜୀବନ ଜିଇଁ ହୁଏନାହିଁ। ଜୀବନର ଗଣିତ ସହଜେ ବଡ ଜଟିଳ। ତା'ପରେ ପୁଣି ଅସହାୟ ଶିଶୁର ଦାୟିତ୍ୱ ବହନ ଅବିନାଶକୁ କଷ୍ଟକର ପରିସ୍ଥିତିରେ ପହଞ୍ଚାଇବ ନାହିଁତ ?

ଘରକୁ ଫେରିବାପରେ ଅବିନାଶ ଲକ୍ଷ୍ୟକଲା ବଡ଼ଭାଇ ଅନନ୍ତ ଗମ୍ଭୀର ରହୁଛନ୍ତି। ସେ ଅନନ୍ତଙ୍କ ମନରେ ଉଠିଥିବା ସନ୍ଦେହକୁ ତାଙ୍କ ଭାବଭଙ୍ଗୀ ଦେଖି ଅନୁଭବ କରିପାରିଲା। ଭାଇଙ୍କ ପାଖକୁ ଯାଇ ବସିଲା ଓ କ୍ଷୀଣସ୍ୱରରେ ନିଜର ସୂକ୍ଷ୍ମ ଚେତନାକୁ ବ୍ୟକ୍ତକରିବାକୁ ଯାଇ କହିଲା "ଭାଇ ମୁଁ ଯେଉଁ ଶ୍ରମ କରି ଗଳ୍ପ, ଉପନ୍ୟାସ ଲେଖୁଛି ପଢୁଛି ସେହି ଶ୍ରମ ଓ ସମୟ ଏ ଶିଶୁଟିପାଇଁ ଉତ୍ସର୍ଗ କରିବି। ପୁସ୍ତକ ଲେଖିବା ଓ ଛାପିବା ଯେମିତି ମହାନକାର୍ଯ୍ୟ ଓ ସୃଜନଶୀଳତାର ପରିଚୟଦିଏ, ଜଣଙ୍କୁ ପାଠଶାଠ ପଢାଇ ଭଲ ଶିକ୍ଷିତ ମଣିଷଟିଏ କରିବା ମଧ୍ୟ ଏକ ସୃଜନକଳା। ମୁଁ ମଧ୍ୟ ଏଇ ମଣିଷଗଢା ଦାୟିତ୍ୱ ନେବି। ତାକୁ ମୋର ବାଲ୍ୟବନ୍ଧୁ ଅଶୋକ ଚଳାଉଥିବା ଆଶ୍ରମ ବିଦ୍ୟାଳୟରେ ଛାଡିବି। ନୂତନ ବହି ପ୍ରକାଶରେ ଯେଉଁ ପରିମାଣରେ ଆନନ୍ଦ ପାଏ ତାହା ମୁଁ ଏ ଶିଶୁର ସର୍ବାଙ୍ଗୀନ ଉନ୍ନତି ଦେଖି ପାଇବି।

ଅନନ୍ତ, ଅବିନାଶଠାରେ ଚେତନାର ଏକ ସୁନ୍ଦର ଉତ୍ତରଣ ଆବିଷ୍କାର କରିପାରି ଆନନ୍ଦରେ ଆଖିରୁ ଅଶ୍ରୁ ପୋଛୁପୋଛୁ କହିଲେ ଆସନ୍ତା ନୂତନବର୍ଷ ତୋ'ପାଇଁ ସମସ୍ତ ସଂଭାବନାର ଏକ ନିର୍ଭରଯୋଗ୍ୟ ପ୍ରତିଶ୍ରୁତିପୂର୍ଣ୍ଣ ସୁନ୍ଦର ନବବର୍ଷ ହେଉ।



# ପାପ ବନାମ୍ ମହାପାପ

ଗୋକୁଳ ଦାସର ଦୁର୍ଭାଗ୍ୟର ଦୁଇଦୁଇଟି କାରଣ ଥିଲା। ଗୋଟିଏ ହେଲା ଖରାପ ସାଙ୍ଗ ଆଉ ଅନ୍ୟଟି ହେଲା ତା'ର ମଦ୍ୟପାନ ଅଭ୍ୟାସ ତଥା ବଦଖର୍ଚ୍ଚ। ଥରେ ଏପରିହେଲା ଲଗାମଛଡା ଭାବରେ ମଦପିଇ ଓ ମାତାଲହୋଇ ପାଞ୍ଚଦିନ ପର୍ଯ୍ୟନ୍ତ ସେ ଘରକୁ ଫେରି ନଥିଲା । ନିଜର କର୍ମସ୍ଥଳକୁ ମଧ ଯାଇ ନିଜର କର୍ତ୍ତବ୍ୟ ସମ୍ପାଦନ କରିନଥିଲା। ନିଜର ଚାକିରୀ ଓ ପରିବାର କଥା ପୂରାପୂରି ଭୁଲିଯାଇ ପାଞ୍ଚଦିନ ଓ ପାଞ୍ଚରାତିଧରି ଯେଉଁସବୁ ସ୍ଥାନରେ ସେ ଅତିବାହିତ କରିଥିଲା, ଏବେ ମଧ ତା'ର ସ୍ମୃତି ଅସ୍ପଷ୍ଟ ଭାବରେ ମନେପଡୁଛି। ଅନେକ ମାତାଲଙ୍କ ମୁହଁ, ମଦବୋତଲ ଏବଂ ସେହିଲୋକ ତଥା ବନ୍ଧୁମାନଙ୍କ ଟଳମଳ ପାଦ ଏବେ ମଧ ତା'ର ଛାଇଛାଇକା ଦେଖାଯାଉଛି।

ପାଞ୍ଚଦିନ ତଳର କଥା। ଦିନେ ସନ୍ଧ୍ୟାବେଳେ, ରାସ୍ତାର ବିଜୁଳି ଖୁଣ୍ଟରେ ଆଲୁଅ ଜଳିସାରିବା ପରେ ସେ ଗୋଟିଏ କାମନେଇ ତା'ର ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲା। ବନ୍ଧୁ ତାକୁ ଘରଭିତରକୁ ଡାକିନେଇ ଶ୍ରଦ୍ଧାରେ ମଦଗ୍ଲାସଟିଏ ବଢାଇ ଦେଇଥିଲେ। ସେତକ ସରିବାପରେ ଲାଗ୍ ଲାଗ୍ ଆହୁରି ପାଞ୍ଚଗ୍ଲାସ ମଦ ସେ ଦେଇଥିଲେ, ସେତକ ସାରି ଦୁଇବନ୍ଧୁ ମିଶି ଆଉ ଜଣେ ବନ୍ଧୁଙ୍କ ଘରକୁ ଗଲେ। ସେ ବନ୍ଧୁ ମଧ ତାକୁ ଆଦର ଅଭ୍ୟର୍ଥନା ସହକାରେ ଘରଭିତରକୁ ଡାକିନେଇ ବିଦେଶୀ ମଦ ପରଶିଦେଲେ। ବିଦେଶୀମଦ ପରେ ଆସିଲା ଦେଶୀମଦ। ଏହିପରି ଭାବରେ ଗ୍ଲାସପରେ ଗ୍ଲାସ ଖାଲି ମଦପିଆ ଚାଲିଲା। ଏହାର ପର ଘଟଣାତକ ଦରଭୁଲା ସ୍ୱପ୍ନ ପରି ଅସ୍ପଷ୍ଟ ଭାବରେ ମନେପଡେ ଗୋକୁଳ ଦାସର। ମନେପଡେ ଏକ ବିଦେଶିନୀ ନାରୀ କଣ୍ଠର ସେହି ପ୍ରେମବତୁରା ଗୀତ। ତା'ର ଛୋଟିଆ ନରମ ମୁହଁଟି ଅତିସୁନ୍ଦର ଦେଖାଯାଉଥିଲା। ଏକ ପାଞ୍ଚତାରକା ହୋଟେଲରେ ନୃତ୍ୟ ପରିବେଷଣ ଚାଲିଥାଏ। ଅନେକଲୋକ ସେଠାରେ ଜମା ହୋଇଥାନ୍ତି। ମଦ୍ୟ, ଚୁରୁଟ୍ ଆଉ ସିଗାରେଟର ଧୂଆଁ ସହ ସୁନ୍ଦରୀ ନାରୀମାନଙ୍କର ତଥାକଥିତ ଅଶ୍ଳୀଳ ନୃତ୍ୟରେ ବିଭୋର ଜନତାଙ୍କ ସହ ଗୋକୁଳ ଦାସ

ମଧ୍ୟ ନିଜ ପକେଟରେ ହାତରଖି ଚିନ୍ତା କରୁଥିଲା ଆଉ କେତେ ସମୟ ସେ ଏ ରଙ୍ଗୀନ ହୋଟେଲରେ କଟାଇ ପାରିବ। ହୋଟେଲର କାନ୍ଥରେ ନାରୀର ବିଭିନ୍ନ ପରିଚ୍ଛଦ ସମ୍ଭାର ଏବଂ ଅନ୍ୟ କେତେକ ସ୍ଥାନରେ ସ୍ୱଳ୍ପପରିଚ୍ଛଦ ବିଶିଷ୍ଟ ନାରୀର ଚିତ୍ରମାନ ଝୁଲାହୋଇଥିଲା। ଚାରିପାଖରେ ମଦ, ଫୁଲ, ଅତରର ମହକ ଖେଳିଉଠୁଥାଏ। ବିଦେଶିନୀ ନାରୀ କଣ୍ଠର ପ୍ରେମବତୁରା ଗୀତ, ତା'ର ଛୋଟିଆ ନରମ ମୁହଁଟି ଅତିସୁନ୍ଦର ଦେଖାଯାଉଥାଏ। ରାତିଟି ଗୋକୁଳ ଦାସ ପାଞ୍ଚତାରକା ହୋଟେଲରେ ମଉଜମସ୍ତିରେ କଟାଇସାରିବା ପରେ ଅବଶ ଦେହଟାକୁ ସକାଳର ସ୍ୱଚ୍ଛ ସୂର୍ଯ୍ୟାଲୋକ ସାମ୍ନାକୁ ଆଣିଲା। ସେ ରହୁଥିବା ରୁମର ବାଲକୋନୀ ପାଖରେ ଠିଆ ହେଲା। ସୂର୍ଯ୍ୟକିରଣ ତା ଉପରେ ପଡିଲା ପରେ ସେ ପ୍ରକୃତିସ୍ଥ ହେଲା। ନିଜର ହାତକୁ ଦେଖିଲା ହାତରେ ହାତଘଣ୍ଟାଟି ନାହିଁ। ସୁବର୍ଣ୍ଣ ବେଲଟର ଦାମୀ ଘଣ୍ଟାଟା ଗତକାଲି ରାତିରେ ସେ ମତୁଆଲା ଥିବା ସମୟରେ କିଏ ନେଇଯାଇଛି ତା'ର ଅଜାଣତରେ। ପ୍ୟାଣ୍ଟର ପଛପକେଟରେ ହାତମାରି ଆଶ୍ଚର୍ଯ୍ୟ ମଧ୍ୟ ହେଲା। ପର୍ସଟା ନାହିଁ। ଭାବିଲା ପର୍ସ ଆଉ ଦାମୀ ମୋବାଇଲଟା ହୋଟେଲରୁମ୍ ଭିତରେ କେଉଁଠି ଥୋଇଦେଇଥିବ, ଖୋଜି ଖୋଜି ନିଃରାଶହେଲା ସେଟା ମଧ୍ୟ ନାହିଁ। ଗତକାଲି ରାତିରେ ମଦ୍ୟପାନ କରି ଅର୍ଦ୍ଧଚେତନ ଅବସ୍ଥାରେ ସେ ବହୁତ କିଛି ଦାମୀ ତଥା ଦରକାରୀ ଜିନିଷ ହରାଇଛି। ସକାଳର ସୂର୍ଯ୍ୟାଲୋକ ତାକୁ ନିର୍ମମ ବିଦ୍ରୂପ କରୁଥିଲା। ପରେ ସେ ଆବିଷ୍କାର କଲା ଯେ, ତା ବେକରେ ଥିବା ଅଢେଇଭରିର ସୁନାଚେନ୍‌ଟା ମଧ୍ୟ ନାହିଁ। ତାକୁ ମଧ୍ୟ ଗତକାଲି ରାତିରେ କିଏ ଚୋରୀକରି ନେଇଯାଇଛି। ସବୁକିଛି ହରାଇବାପରେ ଗୋକୁଳ ଦାସ ଦିନ ଦଶଟା ସମୟରେ ଅଫିସ୍‌ଆଡେ ମୁହାଁଇଲା। ପାଞ୍ଚଦିନ ହେବ ସେ ଅଫିସ ଯାଇନାହିଁ। ଦେହରେ କ୍ଳାନ୍ତି ଭରି ଯାଇଥାଏ। ମୁଣ୍ଡଟା ଭାରିଭାରି ଲାଗୁଥାଏ। ଲଜ୍ଜା, ସଙ୍କୋଚ ତଥା ଆତଙ୍କରେ ଥରି ଥରି ସେ ଦୁର୍ଗନ୍ଧ ମୁହଁରେ ଯାଇ ଅଫିସରେ ବଡବାବୁଙ୍କ ପାଖରେ ହାଜର ହେଲା। ବଡବାବୁ ତା ଆଡକୁ ନ ଚାହିଁ ଉଦାସ କଣ୍ଠରେ କହିଲେ, ଆଉ ନିଜକୁ ଲଜ୍ଜାକର ପରିସ୍ଥିତିରେ ପକାଅ ନାହିଁ। ତୁମେ କାହିଁକି ଏଠାକୁ ଆସିଲ, ମୁଁ ତାହା ବୁଝିପାରୁନାହିଁ। ତୁମେ ବିନାଅନୁମତିରେ ପାଞ୍ଚଦିନ ଅନୁପସ୍ଥିତ ରହିବା ଯୋଗୁ ତୁମର ଚାକିରୀ ଜୋନାଲ୍‌ମ୍ୟାନେଜର ଆସି ରଦ୍ଦକରି ଦେଇଛନ୍ତି। ଉପରିସ୍ଥ ଅଫିସରଙ୍କ ଆଦେଶରେ ତୁମକୁ କାର୍ଯ୍ୟରୁ ଅନ୍ତର କରାଯାଇଛି। ତୁମପରି ଦାୟିତ୍ୱହୀନ ଲୋକ ଆମର ଦରକାର ନାହିଁ। ଆଶା କରୁଛି, ତୁମେ ଚାଲାକ ଲୋକ ଏବଂ ମୋ କଥା ବୁଝିପାରୁଥିବ।

ଗୋକୁଳ ଦାସ ବଡବାବୁଙ୍କର ସେହି ଆନ୍ତରିକତାବିହୀନ ମନ୍ତବ୍ୟ, ଶାଣିତ ଚାହାଣୀ ଆଉ ସର୍ବୋପରି ଅନ୍ୟ ସହକର୍ମୀମାନଙ୍କର ନିର୍ବିକାର ନୀରବତା ତାର ଅସହାୟ ପରିସ୍ଥିତିକୁ ଉପହାସ କରୁଥିଲା। ବଡବାବୁଙ୍କ ପାଖରୁ ଫେରିବା ବାଟରେ ସେ ମନେ ମନେ ଭାବୁଥିଲା, ଧିକ ମୋ ଜୀବନ। ମୋର ମାନସମ୍ମାନ ସବୁ ନିଜ ହାତରେ ନଷ୍ଟକଲି। ଚାକିରୀ ଖଣ୍ଡିକ ମଧ୍ୟ ମୋର ଗଲା, ମୋ ବାପା ମରିବା ପୂର୍ବରୁ କୌଣସି ସମ୍ପତ୍ତି ମୋ ପାଇଁ ମଧ୍ୟ ଛାଡିଯାଇନାହାନ୍ତି ଯେ, ମୋର ଚାକିରୀ ନ ଥିଲେ ମଧ୍ୟ ମୋର ସ୍ତ୍ରୀ ଆଉ ଦୁଇପିଲାଙ୍କୁ ନେଇ ଆଜିର ମହଙ୍ଗା ଯୁଗରେ ଚଳିପାରିବି ? ଗୋକୁଳ ଦାସର ନିଜପ୍ରତି ଘୃଣାଭାବ ଦେଖାଦେଲା। ଲଜ୍ଜା, ଭୟ, ସଙ୍କୋଚ ଓ ଆତ୍ମଗ୍ଲାନିରେ ତାଙ୍କର ଅନ୍ତର୍ଦାହ ହେଲା। ସେ ମନେ ମନେ ଭାବିଲା ନା, ଆଉ ନୁହେଁ। ଅନ୍ୟ କିଛି ଉପାୟ ନାହିଁ। ଲଜ୍ଜା ଆଉ ଅପରାଧବୋଧରେ ନିଜଘରକୁ ଯାଇ ନିଜ ସ୍ତ୍ରୀକୁ ସେ କି ଉତ୍ତର ଦେବ। ସତକଥା ଆଜି ନ ହେଲେ କାଲି ତ ତାର ସ୍ତ୍ରୀ ନିଶ୍ଚିତ ଜାଣିବ। ଏପରି ପରିସ୍ଥିତିରେ ନିଜହାତରେ ନିଜକୁ ଗୁଳିକରି ଆତ୍ମହତ୍ୟା କରିବାଟା ଶ୍ରେୟସ୍କର। ଭୀଷଣ ମାନସିକ ଯନ୍ତ୍ରଣାରେ ଗୋକୁଳ ଦାସ ଜର୍ଜରିତ ହୋଇଯାଇ ତାର ବନ୍ଧୁ ମୋହନ ମହାନ୍ତି ପାଖରେ ପହଞ୍ଚିଲା। ମୋହନକୁ କହିଲା, ଚାଲ ପାଖ ଜଳଖିଆ ଦୋକାନରେ ବସିବା। ପାଖ ଜଳଖିଆ ଦୋକାନରେ ଦୁହେଁ ଯାଇ ବସିଲେ । ଗୋକୁଳ ସେଠାରେ ମୋହନକୁ କହିଲା, ମୁଁ ଦୁଇବର୍ଷ ହେଲା ଜମା ମଦ ପିଇ ନଥିଲି, ମୋତେ ମୋ ସ୍ତ୍ରୀ ଦେହ ଛୁଆଁଇ, ଶିବ ମନ୍ଦିରକୁ ନେଇ ଶପଥ କରାଇଥିଲା ପିଲାଙ୍କ ରାଣ ମଧ୍ୟ ଦେଇ କହଥିଲା ଆଉ ମଦ କୌଣସି ପରିସ୍ଥିତିରେ ନ ପିଇବାକୁ। ମୁଁ ଶପଥ କରିଥିଲି। ଶପଥ ଭାଙ୍ଗି ଆଜି ମୁଁ ମୋର କୁକର୍ମର ଫଳ ଭୋଗିଛି। ସମସ୍ତେ କହନ୍ତି ମଦ ପିଇବାଟା ଖରାପ । ମଦମୁକ୍ତ, ନିଶାମୁକ୍ତ ସମାଜ ଗଠନ ପାଇଁ ଅନେକ ସ୍ୱେଚ୍ଛାସେବୀ ସଂଗଠନ ଅହରହ ସଂଗ୍ରାମ ଚଳାଇଛନ୍ତି। ମୁଁ କିଛି ନହେଲେବି ଦୁଇ ଅକ୍ଷର ପାଠ ପଢିଛି। ସବୁ ଜାଣିଶୁଣି ମୁଁ ଗୁରୁତର ଭୁଲ କରିଛି ମୋର ବଂଚିବାର କୌଣସି ଅଧିକାର ହିଁ ନାହିଁ। ଅଳ୍ପ ଦମ ନେଇ ଗୋକୁଳ ଦାସ ବନ୍ଧୁ ମୋହନକୁ ପୁଣି କହିଲା, ମୁଁ ଘରକୁ ଫେରିବି କେମିତି ? ମୋତେ ଲାଗୁଛି ମୁଁ ଘରକୁ ଫେରୁନାହିଁ ଯେ, "ବଢିଲା ନଈକୁ ଡେଉଁଛି।" ମୋର ଟଙ୍କା ଥିବା ପର୍ସ, ଦାମୀ ମୋବାଇଲ ସେଟ, ବେକର ଦାମୀ ସୁନାହାର ଆଉ ସର୍ବୋପରି ମୋର ଚାକିରୀଟା ମଧ୍ୟ ଗଲା। ସବୁ ହରାଇଲେ ମିଳିଯିବ , କିନ୍ତୁ ବେଉସା ଚାକିରୀ ଗଲେ ମୁଁ କେଉଁଠାରୁ ପଇସା ଆଣିବି ଯେ, ଏସବୁ ପୁଣି କରିବି ? ସବୁଠାରୁ ବଡକଥା ହେଲା ମୋ ସ୍ତ୍ରୀକୁ ମୁଁ ମୁହଁ କିପରି ଦେଖାଇବି ? ବନ୍ଧୁ ମୋହନ ମହାନ୍ତି, ଗୋକୁଳର ମନ

ମୋହିଲା ଭଳି କହିଲା ଏତେ ଚିନ୍ତା କରନା, ତୋର ସ୍ତ୍ରୀ ଦୁଇପଦ ଗାଳିଦେବ, ବାସ୍ ସହିଯିବୁ, ଆଉ କଣ ସେ କରିବ, ତା'ପରେ ସବୁ ଠିକ୍ ହୋଇଯିବ।

ଗୋକୁଳ କହିଲା ଏଥର ମୋତେ ମୋ ସ୍ତ୍ରୀ ଦେଖିଲେ ଘୃଣା କରିବ। ମଦୁଆ ଲୋକଙ୍କୁ ସେ ଭୀଷଣ ଘୃଣାକରେ। ଘୃଣା ମଧ୍ୟ କରିବା କଥା । ମଦ ପିଇ ଯିଏ ସର୍ବସ୍ୱ ହରାଏ, ନିଜ ଖାଇବା ଥାଳିରେ ଯିଏ ଧୂଳି ପକାଏ, ମାନ, ମହତ, ଚାକିରୀ ହରାଏ ତା ଉପରେ କେଉଁ ସ୍ତ୍ରୀ ନ ରାଗିବ ? ଗୋକୁଳ ପୁଣି କହିଲା, ସ୍ତ୍ରୀ ଲୋକମାନେ ସ୍ୱାମୀର ସବୁକିଛି ସହି ପାରନ୍ତି ଅର୍ଥାତ ରୋଗ, ବାର୍ଦ୍ଧକ୍ୟ, ମାଡ, ଗାଳି ସବୁକିଛି। କିନ୍ତୁ ଅର୍ଥ ଅଭାବକୁ ଆଦୌ ସହନ୍ତି ନାହିଁ। ଚୋରି କର କି ମୂଲଲାଗ ସେମାନଙ୍କ ହାତରେ ଟଙ୍କା ଦେବାକୁ ହେବ। ମୋର ଏଇ ପାଞ୍ଚଦିନର ମଦୁଆ ଜୀବନଯାପନ ପାଇଁ ମୋ ସ୍ତ୍ରୀ ମୋତେ ହୁଏତ କ୍ଷମାଦେଇପାରେ, କିନ୍ତୁ ଆର୍ଥିକ ଅଭାବ ତଥା ଭୋକପାଇଁ ସେ କଦାପି କ୍ଷମାଦେବ ନାହିଁ। ମୋହନ ମହାନ୍ତି ଦୀର୍ଘନିଃଶ୍ୱାସ ଛାଡି କହଲେ, ହେ ବନ୍ଧୁ ! ମୋର ମନେ ହୁଏ, ତୁମକୁ ଆଜି "ସ୍ତ୍ରୀ ଗଞ୍ଜଣା" ଯୋଗଅଛି। ଗୋକୁଳ କହିଲା, ମୋ ସ୍ତ୍ରୀ ଜମା କିଛି ବୁଝିବନାହିଁ। ମୁଁ ଜାଣେ ଯେତେ ଦୁଃଖ ପ୍ରକାଶ କଲେ ମଧ୍ୟ ତାର ମନ ତରଳିବ ନାହିଁ। ମୋର ଅନୁତାପ ମଧ୍ୟ ତାର ମନରେ ପରିବର୍ତ୍ତନ ଆଣିବନାହିଁ। ମୋର ଦୋଷ ଦେଖିଲେ ସେ କ୍ଷମା ଦେବାର ପ୍ରଶ୍ନ ଉଠାଇବ ନାହିଁ। ଯଦି ସେ ମୋର ଦୋଷଦେଖି ଗାଳିମନ୍ଦ କଲା ତେବେ ଭଲ, କିନ୍ତୁ ଯଦି ସେ ଅଭିମାନ କରେ ତେବେ ସପ୍ତାହ ସପ୍ତାହ ଧରି ଅଭିମାନ କରି ମଝିରେ ମଝିରେ ଉଲୁଗୁଣା ଦେଇ ମନ ଭିତରଟାକୁ ରକ୍ତାକ୍ତ କରି ପକାଇବ। ତାର ନୀରବତା ହିଁ ଅଧିକ ସାଂଘାତିକ। ମୋହନ ମହାନ୍ତି ବନ୍ଧୁ ଗୋକୁଳକୁ କହିଲା, ଯାହା ଘଟିବାର ଥିଲା ଘଟିଯାଇଛି। ଏତେ ଭାବି ଲାଭନାହିଁ, ଗତସ୍ୟ ଶୋଚନା ନାସ୍ତି,ଘରକୁ ଯାଅ।

ଗୋକୁଳ ପରିଶେଷରେ ଯାହା ହେବାକୁ ଥିବ ହେବ ଭାବି ନିଜ ଘର ଦ୍ୱାର ଶେଷରେ କଲିଂ ବେଲ ମାରିଲା। ମନକୁ ମନକୁ ଠିକ କଲା, ସବୁ କଥା ସ୍ତ୍ରୀ ଆଗରେ ଖୋଲି କହିଦେବ। ସେଥିରେ ଯଦି ତା ସ୍ତ୍ରୀର ମନ ନମାନେ, ସବୁ ଛାଡିଛୁଡି ଦେଇ ଯୁଆଡେ ଆଖିପାଇବ ସିଆଡେ ଚାଲିଯିବ। ଠିକ ଏତିକି ବେଳେ ଘରର କବାଟ ଖୋଲିଲା, ତା ସ୍ତ୍ରୀ ତାକୁ ଜିଜ୍ଞାସୁ ଚାହାଣୀରେ ଅନେଇ ରହିଲା। ସ୍ତ୍ରୀର ମଳିନ ମୁଖମଣ୍ଡଳ ଦେଖି ଗୋକୁଳ ଦାସର ଭୟହେଲା। ସ୍ଥିର କଲା, ସ୍ତ୍ରୀ ଆଗେ ଯାହା କହିବାର ଅଛି କହିଯାଉ। ତାପରେ ନିଜ କଥା କହିବ। କିନ୍ତୁ ଆଶ୍ଚର୍ଯ୍ୟ। ସ୍ତ୍ରୀ ତାକୁ କିଛି ନକହି ବୈଠକ ଘରକୁ ପସିଲା। ସେଇଠୁ ଫେରି ରୋଷେଇ ଘରେ ପଶିଲା। ଆଖିରେ ତାର ପୂର୍ବବତ୍

ଜିଜ୍ଞାସୁ ଚାହାଣି। ଗୋକୁଳ ଦାସର ଏଥର ମନେ ମନେ ଲଜ୍ଜା ଅନୁଭବ କଲା। ଏ ପରିସ୍ଥିତିରେ ସେ ଅସହାୟବୋଧ କଲା। ପ୍ରାୟ ଦଶ ମିନିଟ କାଳ ଏପଟ ସେପଟ ହୋଇ ଘୂରିବୁଲିଲା। ତଥାପି ସ୍ତ୍ରୀ ତାକୁ ପଦେ କଥା ପଚାରିଲା ନାହିଁ। ଗୋକୁଳର ମଧ୍ୟ ସାହାସ ନଥିଲା। ସେ ଟେବୁଲ ପାଖରେ ଆସି ଚୁପଚାପ୍ ବସିଗଲା, ଖଣ୍ଡିଏ କାଗଜ ଆଣି ସେଥିରେ କଲମଟିଏ ଧରି ଗୋକୁଳ ଦାସ ଲେଖିବାକୁ ଆରମ୍ଭକଲା, ମୋର ଦୁର୍ଭାଗ୍ୟ ନିଜର ଦୋଷ ଯୋଗୁଁ ଚାକିରୀରୁ ତଡା ଖାଇଛି। ବ୍ୟସ୍ତ ହୁଅନାହିଁ, ଟେବୁଲ ଉପରେ ସେ ଲେଖାଟିକୁ ରଖିଦେଇ ପାଖଘରକୁ ପଶିଗଲା। ସେଇଠୁ ସେ ଦୁଃଖ ଓ ଅନୁଶୋଚନାରେ ମୁଣ୍ଡପୋତି ବସି ରହିଲା। ସ୍ତ୍ରୀ ପରେ ଆସି ଗୋକୁଳକୁ ସାନ୍ତ୍ୱନା ଦେବାକୁ ଲାଗିଲା, କହିଲା ଆମର ଗୋଡ ହାତ ଚଳୁଥିବା ପର୍ଯ୍ୟନ୍ତ ଦାନା କନାର ଅଭାବ ରହିବନାହିଁ। ଏମତି ଭାଙ୍ଗିପଡିଲେ କଣ ସଂସାର ଚଳିବ ? ଧୈର୍ଯ୍ୟ ହରାଅନାହିଁ, ଭଗବାନ ଜଗନ୍ନାଥ ସବୁଠିକ୍ କରିଦେବେ। ଦୁଃଖରେ ରାତି ପାହିଯିବ, ଖୋଜିଲେ ପୁଣି ଚାକିରୀ ମିଳିବ। ଚିନ୍ତା କଣ, କାହିଁକି ? ଆସ ମୁହଁହାତ ଧୋଇ ଖାଇପିଇ ବିଶ୍ରାମ ନେବ। ଗୋକୁଳ ସ୍ତ୍ରୀର ସବୁ କଥା ଶୁଣି ନୀରବରେ ବସି ରହିଲା। ସେ ନିଜ କାନକୁ ବିଶ୍ୱାସ କରିପାରୁନଥିଲା। ଉତ୍ତରଦେବା ଅବସ୍ଥାରେ ମଧ୍ୟ ସେ ନଥିଲା। ପରଦିନ ନୂତନ ଉତ୍ସାହ ନେଇ ଚାକିରୀ ଅନ୍ୱେଷଣରେ ଗୋକୁଳ ଦାସ ବାହାରି ପଡିଲା। ଯୋଗକୁ ସାତ ଦିନ ଭିତରେ ଗୋଟିଏ ନୂଆ ଚାକିରୀ ମିଳିଗଲା। ଦରମା ମଧ୍ୟ ପୂର୍ବ ଚାକିରୀ ଠାରୁ ଅଧିକ। ତା ଜୀବନରେ ଘଟିଥିବା ଦୁର୍ଭାଗ୍ୟ ତା ଜୀବନରେ ଏକ ବିରାଟ ପରିବର୍ତ୍ତନ ଘଟାଇଦେଲା। ଗୋକୁଳର ସମ୍ପୂର୍ଣ୍ଣ ନୂତନ ସଂସ୍କରଣ ସତେ ଯେମିତି ପ୍ରକାଶିତ ହେଲା।

ଗୋକୁଳ ଦାସ ଆଜିକାଲି ମଦୁଆ, ଗଞ୍ଜେଇଡ କିମ୍ବା ହେରୋଇନ୍ ଖାଉଥିବା ଲୋକଙ୍କୁ ଦେଖିଲେ ଘୃଣା କରୁନାହିଁ, ବରଂ ସେମାନଙ୍କ ଦୟନୀୟ ଅସହାୟ ଅବସ୍ଥାରେ ସେମାନଙ୍କୁ ନିଜର ପାରୁପର୍ଯ୍ୟନ୍ତ ଚେଷ୍ଟାକରି ରକ୍ଷା କରିବାରେ ପ୍ରୟାସ ରଖୁଛି। ସେ ନିଜେ ମନେମନେ ଭାବୁଛି ଦରକାର ପଡିଲେ ଅନ୍ୟ ସଚେତନ ଲୋକଙ୍କୁ କହିହେଉଛି, "ମଦ ତଥା ନିଶା ଖାଇବାଟା ପାପ ନୁହେଁ, ମାତ୍ର ମଦୁଆ ନିଶାସକ୍ତ ଲୋକମାନଙ୍କୁ ଖରାପ ରାସ୍ତାରୁ ଉଦ୍ଧାର ନକରିବାଟା ମହାପାପ। ବୋଧହୁଏ ଗୋକୁଳ ଦାସର ଏଭଳି ଚିନ୍ତା ତଥା କଥା ଅକ୍ଷରେ ଅକ୍ଷରେ ସତ।



# ସୁଚିତ୍ରାର ଆତ୍ମଲିପି

ଅତି ବେଶୀରେ ଛଅମାସ ମୁଁ ଗୋଟିଏ ଥାନାରେ ଇନିସ୍‌ପେକ୍ଟର ହୋଇ ରହିପାରେ। ତା'ର ମୂଳ କାରଣଟା ହେଲା ମୁଁ ଟଙ୍କା ଲାଞ୍ଚ ନେଇ ଅନ୍ୟାୟର ମଙ୍ଗ ଧରିଥିବା ପକ୍ଷଙ୍କ ସପକ୍ଷରେ ଗୋଟିଏ ଭଲ ଚାର୍ଜସିଟ ଲେଖି ପ୍ରତିପକ୍ଷ ଯିଏ ପୀଡ଼ା ଭୋଗ କରୁଥାଏ ତାକୁ କୋର୍ଟରେ ଅପଦସ୍ତ କରିବାର କଳାଟିକୁ ଆୟତ୍ତ କରିବାରେ ଅସମର୍ଥ। ମୁଖ୍ୟ ଏବଂ ପ୍ରଣିଧାନଯୋଗ୍ୟ କଥାଟି ହେଲା ମୁଁ ଥାନାର ଇନିସ୍‌ପେକ୍ଟର-ଇନ୍-ଚାର୍ଜ ହୋଇ ମଧ୍ୟ ଲାଞ୍ଚ ଖର୍ଚ୍ଚ ନେଇ ଉପରିସ୍ଥ ଅଫିସରଙ୍କ ପକେଟ ଭରିପାରେ ନାହିଁ। ହିନ୍ଦୀ ସିନେମା ହେଉ କିମ୍ବା ଓଡ଼ିଆ ସିନେମାରେ ହେଉ ମୁଁ କଲେଜ ପଢ଼ା ସମୟରେ ଏମିତି ଅନେକ ସିନ୍ ଥିବା ଚଳଚ୍ଚିତ୍ର ଦେଖିଛି ଯେଉଁଥିରେ ଖଳନାୟକରୂପୀ ଇନିସ୍‌ପେକ୍ଟର ଛଳନାର ମୁଖା ପିନ୍ଧି ଲୋକଙ୍କୁ ଶୋଷଣ କରିଥାଏ।

ଏଇ ଗତ ମାସ ଝିପ୍‌ଝିପ୍ ବର୍ଷାର ରିମ୍‌ଝିମ୍ ତାନରେ ସିପିଲି ଟାଉନ ଥାନାର ବାରଣ୍ଡା ବାହାରର ଘାସ ଲନ୍‌ରେ ମୁଁ ମୋର ବାଲ୍ୟାବସ୍ଥାର ସ୍ମୃତିକୁ ରୋମନ୍ଥନ କରୁଥିଲି। ମୁଁ ମନେ ମନେ 'ସାଧବ ବୋହୂ'ର ଚଳଚଞ୍ଚଳ ଚାଲିକୁ ମନେ ପକାଉଥିଲି। ଲାଲ ରେଶମର ଶାଢ଼ୀରେ ଛୋଟ ଛୋଟ ସାଧବ ବୋହୂଙ୍କୁ ହାତ ପାପୁଲି ଉପରେ ଚଲାଇବାରେ ମଜା ବର୍ତ୍ତମାନ ମଧ୍ୟ ମୋମନର କାନଭାସ୍‌ରେ ସତେଜ ସୁନ୍ଦର ଛବି ଭଳି ଉଦ୍‌ଭାସିତ ହେଉଛି।

ଏଇ ମାତ୍ର ପନ୍ଦରଦିନ ହେବ ମୁଁ ସିପିଲି ଥାନାରେ ଭୁବନେଶ୍ୱରର ଏକ ଥାନାରୁ ବଦ୍‌ଳି ହୋଇ ଆସି ଜଏନ୍ କରିଥିଲି। ଥାନାର ଅଧସ୍ତନ କର୍ମଚାରୀଙ୍କ ଠାରୁ ସ୍ଥାନୀୟ ନେତା, ଚୋର, ସ୍ମଗଲର ଏବଂ ଅନ୍ୟାନ୍ୟ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ବିଷୟରେ ଅବଗତ ହୋଇ ସାରିଥାଏ।

ଜୀବନପୃଷ୍ଠାରେ 'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ....' 'ଏହି ବୋଲିଟିର ସତ୍ୟତାକୁ ମୁଁ ଅଙ୍ଗେଅଙ୍ଗେ ନିଭାଇଛି। ଅନେକ ଅବାଞ୍ଛିତ ଦୁର୍ଘଟଣା

ଯଥା ନାରୀ ନିର୍ଯ୍ୟାତନା, ପାରିବାରିକ ହିଂସା, ରାଜନୈତିକ ବାଦବିବାଦ ସହ ହିଂସା ଏପରିକି ହତ୍ୟା କେଶ୍‌ଗୁଡିକ ଦେଖିଦେଖି ଦେହସୁହା ହୋଇଥିଲେ ମଧ୍ୟ ମନଭିତରଟା ମୋର କୋମଳ ଶିଶୁତୁଲ୍ୟ ସର୍ବଦା ବିଚରଣ କରୁଥାଏ। ଏଇ ବର୍ଷର ପ୍ରଥମ ବର୍ଷାର ଶୀତଳ ସ୍ପର୍ଶରେ ସିପିଲି ଟାଉନ ସହ ଥାନା ଅଞ୍ଚଳଟି ମଧ୍ୟ ସଂପୂର୍ଣ୍ଣ ମନ ମତାଣିଆ ଉଲ୍ଲାସରେ ଭରପୂର ହୋଇଯାଇଥିଲା।

ଠିକ୍ ଏତିକିବେଳେ ଗୋଟିଏ ବାଇଶି କିମ୍ବା ତେଇଶି ବର୍ଷର ଯୁବତୀ ସାଲୁଆର୍ କାମିଜ୍ ପିନ୍ଧି ଆସି ଥାନା ବାରଣ୍ଡାରେ ନିଯୁକ୍ତ କନ୍‌ଷ୍ଟେବଲ୍‌କୁ କିଛି କହିବା ଆରମ୍ଭ କଲା। ତା'ପରେ କନ୍‌ଷ୍ଟେବଲ୍‌ର ଆଦେଶ ପାଇ ସିଧା ମୁଁ ବସିଥିବା ଚେୟାର ସାମ୍ନାରେ ଆସି ଠିଆ ହେଲା। ମୁଁ ତା ମୁହଁକୁ ଚାହିଁ ତାର ମଳିନ ଚେହେରାରେ ପାରିବାରିକ ହିଂସା କିମ୍ବା ଚୋରୀର ଶିକାର ହୋଇଥିବା ଘଟଣାଟିର ଚିତ୍ରର ପୂର୍ବାଭାସରେ ମଗ୍ନ ରହିଲି। ସେ ସିଧା ଛିଡା ହୋଇ 'ସାର୍! ନମସ୍କାର' ବୋଲି ସମ୍ବୋଧନ କରିବା ପରେ ମୁଁ ମୁଣ୍ଡ ଟୁଙ୍ଗାରି ହଁ କଲି, ପଚାରିଲି 'କ'ଣ ହେଲା? କାହିଁକି ଆସିଛ?'

ସେ ଅଧିକରୁ ଅଧିକ ମ୍ରିୟମାଣ ଅବସ୍ଥାକୁ ନଯାଇ ଧିର ଅଥଚ ପ୍ରତିବାଦର ସ୍ୱର ଉଠାଇ କହିଲା, "ବୁଝିଲେ ସାର୍! ମୋର ସ୍ୱାମୀଟା ଭୀଷଣ ବେଇମାନ ପଡିଲା। ଶାଶୁ ଏବଂ ଶ୍ୱଶୁର ଗୋଟିଏ ପକ୍ଷହୋଇ ମୋ ଉପରେ ଅତ୍ୟାଚାର କରୁଛନ୍ତି । ଠିକ୍ କ'ଣ ଭୁଲ କ'ଣ ନ ବିଚାରି ମୋତେ କହୁଛନ୍ତି, "ତୁ ଭଲପାଇ ପୁଅକୁ ଆମର ଯଦି ବାହା ହେଲୁ, ତେବେ ସେ ଯେଉଁ ଟଙ୍କା ଆଣୁଛି ସେହି ଟଙ୍କାରେ ତୁ ଘରଚଳା । ଆମର ଗୋଟିଏ ବୋଲି ପୁଅ ଆମର ଦୋକାନଟିକୁ ଯଦି ଭଡା ଦେଇଥାନ୍ତୁ ତେବେ ଆମେ ମାସିକ ପାଞ୍ଚହଜାର ଟଙ୍କା ପାଇଥାନ୍ତୁ। ତୁ ତାକୁ ବାହା ହେବା ପରେ, ସେ ନିଜେ ଦୋକାନ ଖୋଲି ବେପାର କରୁଛି। ସେ ଲାଭାଂଶକୁ କଣ ତୁମେ ଦୁହେଁ ଖାଇବ?" ମୋତେ ମୋର ଶାଶୁ ଗତକାଲି ରାତିରେ ଲୁହାରଡ ଧରି ଚେଙ୍କି ମୋର ପରିବାର ବିଷୟରେ ଭର୍ତ୍ସନା କରି ମୋତେ ଶୋଇବାକୁ ମଧ୍ୟ ଦେଲା ନାହିଁ।

ମୋର ଶାଶୁ ଶ୍ୱଶୁର ମୋତେ ପିଟୁଥିବା ସମୟରେ ମୁଁ ଯାହାକୁ ଈଶ୍ୱର ବୋଲି ବିବେଚନା କରି ମୋର ଜନ୍ମ ଜନ୍ମାନ୍ତରର ଜୀବନସାଥୀ ରୂପେ ଚୟନ କରିଥିଲି ସେ ଏସବୁକୁ ଦେଖି ମଧ୍ୟ ନଦେଖିଲା ଭଳି କାଠଗଡଟିଏ ଭଳି ଛିଡା ହୋଇଥିଲା। ତା'ର ଆଖିର ଭାଷାକୁ ପଢି ତାର ପ୍ରେମ ନିବେଦନକୁ ସ୍ୱୀକାର କରି ପ୍ରେମ ବିବାହ କରିଥିଲି। ମୋର ବିବାହ ଛଅମାସ ହେବ ସରିଲାଣି। ଏପରି କୌଣସି ଦିନ ନାହିଁ ଯେଉଁ ଦିନ ସେ ପରିବାରର ଲୋକେ ମୋତେ ନିର୍ଯ୍ୟାତନା ଦେଇନାହାନ୍ତି।

ଏଣୁ ବିଶ୍ୱାସ ଓ ଭରସା ରଖି ଆପଣଙ୍କ ନିକଟକୁ ଗୁହାରି କରିବାକୁ ଆସିଛି। ଆପଣ ଥରେ ଥାନାରୁ ଯାଇ ଆମ ଘର ଆଗରେ ପହଞ୍ଚି ଶାଶୁ, ଶ୍ୱଶୁର ଏବଂ ମୋର ସ୍ୱାମୀଙ୍କୁ ଥରେ ତାଗିଦ୍ କରି ଆସନ୍ତୁ। ମୁଁ ଆଶା କରୁଛି ସେମାନେ ମୋ ଉପରେ କରୁଥିବା ଅତ୍ୟାଚାରରୁ କ୍ଷାନ୍ତ ହେବେ। ଦୀର୍ଘଶ୍ୱାସ ଛାଡି ଯେତେବେଳେ ପତଳା ବାଇଶି ବର୍ଷର ଝିଅଟି ଏତିକି କହିଲା, ତାର ଆଶା ଉତ୍କଣ୍ଠାଭରା ଦୁଇଟି ଆଖିରେ ମୁଁ ବିଶ୍ୱାସ ଓ ଆସ୍ଥାର ବୃହତ ଛବିଟିକୁ ଉନ୍ମୋଚନ କଲି। ପୋଲିସ ଉପରେ ଯଦି ସାଧାରଣ ଜନତାଙ୍କର ବିଶ୍ୱାସ ହଜିଗଲା। କି ଆସ୍ଥା ଦୋହଲି ଗଲା, ତେବେ ସେ ଯେଉଁ ପରିସ୍ଥିତି ହେଉ ନା କାହିଁକି ତାର ପତନ ସୁନିଶ୍ଚିତ। ପୋଲିସ ଜନତାଙ୍କ ଆଶା ଓ ବିଶ୍ୱାସ ଉପରେ ହିଁ ପ୍ରତିଷ୍ଠିତ। ବିଶ୍ୱାସନୀୟତାଠାରୁ ବଳି ସର୍ବୋତ୍ତମ ସାଧନ ଶାସକଙ୍କ ଅବା ପୋଲିସଙ୍କ ପକ୍ଷରେ ଅନ୍ୟ କିଛି ନାହିଁ। ପ୍ରସଙ୍ଗ ଅବା ସାଧାରଣ ଜନତାଙ୍କ ପରିସ୍ଥିତିକୁ ଅର୍ଥକୈନ୍ଦ୍ରିକ କରିଦେଲେ ପୋଲିସର ଚରିତ୍ର ଆଉ ପୋଲିସ ସମାଜ ଉପରେ ସାଧାରଣ ଜନତାଙ୍କ ଯେଉଁ ଆସ୍ଥାଥାଏ ତାହା ଭୁଷୁଡି ପଡେ।

ସହଜରେତ ମୁଁ ପୋଲିସ, ମୋ ଉପରେ ସମାଜ ମଙ୍ଗଳର ଦାୟିତ୍ୱ। ଏଣୁ ମୁଁ ସେ ଝିଅଟିକୁ ଆଶାର କିରଣ ଦେଇ କହିଲି, 'ଆଜି ବର୍ଷା ଛାଡୁ, ତୁ ତୋର ଠିକଣା ଘରଟି କେଉଁଠି ମୋର ଡ୍ରାଇଭରକୁ ବୁଝାଇ କହି ଚାଲିଯା । ମୁଁ ଯାଇ ପହଞ୍ଚିଯିବି।'

ପ୍ରକୃତରେ ମୁଁ ଠିକ ସେପରି କିଛି - ମଧ୍ୟ କଲିନାହିଁ। କେବଳ ଡ୍ରାଇଭର ଠାରୁ ତା ଘରଠିକଣାଟି ବୁଝି ମୋର ନିଜର ମୋଟର ସାଇକେଲ ଧରି ଠିକ୍ ଦିନ ସାଢେ ଚାରିଟା ସମୟରେ ତା ଘର ଆଗରେ ପହଞ୍ଚିଗଲି। ତା ଘର ଭିତରେ ଏବଂ ବାହାରେ ଦେଖିଲା ପରେ ମୁଁ କଳନା କରିନେଲି ଯେ ଅର୍ଥନୈତିକ ଅନଗ୍ରସର ପରିବାରଟିଏ। ଅପରିଷ୍କାର, ଅପରିଛନ୍ନ ଭଙ୍ଗା ପୁରୁଣା ଆଜବେଷ୍ଟରେ ଛାତ ପଡିଥିବା ଘରଟିରେ ଅତିବେଶୀରେ ଦୁଇଟି ରୁମ୍, ଘର ବାହାରର କାନ୍ଥରେ ଅଳନ୍ଧୁ। ରୁମ୍ ଭିତରେ ଅନ୍ଧାରର ରାଜୁତି। ମୋଟର ସାଇକେଲରୁ ଓହ୍ଲାଇ କବାଟ ପାଖରେ ପହଞ୍ଚି ଶୁଣିବାକୁ ପାଇଲି 'ଆଲୋ ଅଲକ୍ଷଣୀ, ସୁଚିତ୍ରା'। ତୋ ବାପା ମାଆ ତୋ ନାଁ ସୁଚିତ୍ରା ଦେଇଛନ୍ତି ବୋଲି ତୁ'ତ ବହୁତ ରଙ୍ଗ ଦେଖଉଛୁ ଇତ୍ୟାଦି ..ଇତ୍ୟାଦି। ମୁଁ ଠିକ୍ ବୁଝିପାରିଲି ନାରୀ ନିର୍ଯ୍ୟାତନାର ଇଏ ତଥାକଥିତ ପୁନରାବୃତ୍ତି। ମୁଁ କବାଟରେ ଆଘାତ ଦେଇ ସୁଚିତ୍ରାର ସ୍ୱାମୀ, ଶ୍ୱଶୁର ଏବଂ ଶାଶୁଙ୍କ ନିର୍ଯ୍ୟାତନାରେ ବାଧା ଦେଲି। ପ୍ରଥମେ ସୁଚିତ୍ରାର ସ୍ୱାମୀ ଆସି କବାଟ ଖୋଲିଲା ପରେ ମୁଁ ସେମାନଙ୍କୁ ତାଗିଦ୍ କରିଦେଇ ଆସିଲି, "ସୁଚିତ୍ରାକୁ ଯଦି ଶାରୀରିକ ନିର୍ଯ୍ୟାତନା ଅବା ମାନସିକ ନିର୍ଯ୍ୟାତନା ଦିଅ, ତେବେ ତୁମମାନଙ୍କୁ ଜେଲ୍‌ର ପବନ ଆହାର କରିବାକୁ ପଡିବ।"

ଏହି ଘଟଣା ଘଟିଥିଲା ଜୁନ୍ ତେଇଶି ଶନିବାର ସନ୍ଧ୍ୟାରେ ତାପର ଦିନ ରବିବାର। ସୋମବାର ଦିନ ଏଗାରଟା ସମୟର ଶ୍ରାବଣର ମୂଷଳଧାରାରେ ସିପିଲି – ସହର ସହ ଉପକୂଳ ଓଡିଶା ବତୁରି ଉଠୁଥାଏ। ମୁଁ ଥାନାର ରୁମ୍ ଭିତରେ ବସି ଝରକା ଦେଇ ବିଶ୍ୱର ପ୍ରକୃତିକୁ ସାତ୍ତ୍ୱିକ ନୟନରେ ଏବଂ ମନରେ ଚାହିଁ ବସିଥାଏ। ଠିକ୍ ଏତିକି ବେଳେ ସୁଚିତ୍ରା ଆସି ଥାନାରେ ହାଜର ହେଲା। ମୁଁ ପୁନର୍ବାର କଳ୍ପନାକଲି ପୂର୍ଣ୍ଣସାହି ବସ୍ତିର ସୁଚିତ୍ରା ନାମକ କଳିକାକୁ ଦେଖି ଆଶଙ୍କା କଲି, "ପୁନର୍ବାର କଣ ମାତ୍ର ଗୋଟିଏ ଦିନର ବ୍ୟବଧାନରେ ପରିବାରରେ କଳହ ଉପୁଜିଥିବ। ସୁଚିତ୍ରା ଆସିଛି ମୋତେ ଅନୁରୋଧ କରିବ, ସହାୟତା ଲୋଡିବ, ମୋର ଦାୟିତ୍ୱବୋଧକୁ ଦ୍ୱିଗୁଣିତ କରିବ। ମୋର ପାରଦର୍ଶିତା ପାଇଁ ଆହ୍ୱାନ ଦେବ।" ମୁଁ ତାକୁ ଭିତରକୁ ଡାକିଲି।

ସୁଚିତ୍ରାର ମୁହଁରେ କଳାବାଦଲ ସ୍ପଷ୍ଟ। ନାରୀତ୍ୱର ଅବାହନୀ ମନ୍ତ୍ରରେ ନାରୀଟିଏ ସର୍ବଦା ଦୟାମୟୀ କ୍ଷମାଶୀଳା କିମ୍ବା ସ୍ନେହମୟୀ। ଏଥର କିନ୍ତୁ ସୁଚିତ୍ରାର ରୂପ ବେଦନାରେ ପୀଡିତ। ପାରିବାରିକ ଦାମ୍ପତ୍ୟ ଜୀବନରେ ଶୃଙ୍ଖଳାର ଅଭାବରେ ସୁଚିତ୍ରା ମ୍ରିୟମାଣ ହୋଇ କହିଲା ମୋତେ ଗତକାଲି ରାତିରେ ପିଟିଛନ୍ତି ମୋ ହାତର କାଣି ଆଙ୍ଗୁଠିକୁ ଦେଖନ୍ତୁ। ପ୍ଲାଷ୍ଟରଗୁଡା ଆଙ୍ଗୁଠି, ତା'ପରେ ହାତର କହୁଣୀ ତଳକୁ କଟାଦାଗ। ମୁଁ ତା ଉପରେ ହୋଇଥିବା ଅତ୍ୟାଚାରକୁ ହୃଦୟଙ୍ଗମ କଲି। ପ୍ରତ୍ୟେକ ସମୟରେ ସୁଖ ଅବା ଦୁଃଖ ହେଉ ମୋର ଆଖି କାନ ଖୋଲାଥାଏ। ସମ୍ବେଦନଶୀଳ ଏବଂ ସ୍ପର୍ଶକାତର ବିଷୟ ହୋଇଥିବାରୁ ମୁଁ କଡାଇସ୍ତ୍ରୀ ମରା ଖାକିପୋଷାକ ପିନ୍ଧି ଅପେକ୍ଷାରତ ମୋର ଜିପ ଡ୍ରାଇଭରକୁ ଏବଂ ଅଧସ୍ତନ କର୍ମଚାରୀ ଇନିସ୍‌ପେକ୍ଟର ପ୍ରଶାନ୍ତ ବାବୁଙ୍କ୍ କହିଲି, "ତୁମେ ନିଜେ ଯାଇ ଦେଖି ଆସ ସେ ଯେଉଁ ଘଟଣା ବିଷୟରେ କହୁଛି, ତା'ର ସତ୍ୟାସତ୍ୟ। ସାହି ପଡିଶାଙ୍କ ଠାରୁ ବୁଝି ତାର ବୟାନ ରେକର୍ଡ କରି ସେ ନାରୀ ନିର୍ଯ୍ୟାତନାକାରୀ ପିଶାଚତୁଲ୍ୟ ଶ୍ୱଶୁର, ଶାଶୁ ଏବଂ ସ୍ୱାମୀକୁ ଆରେଷ୍ଟ କର।"

ମଙ୍ଗଳବାର ସୁଚିତ୍ରାକୁ ବାଦଦେଇ ତାର ସମଗ୍ର ପରିବାର କୋର୍ଟ ଚାଲାଣ ହେବା ପରେ ସିପିଲି ନିକଟରେ ଥିବା ସିମାପଡା ଜେଲ କୋଠରୀରେ ବନ୍ଦ ହୋଇଥିଲେ। ବେଲ୍ ନମିଳିବାରୁ ସିମାପଡା ଜେଲ୍‌ରେ ପାଖାପାଖି ଦୁଇମାସ ଦଣ୍ଡ ଭୋଗ କଲେ। ପରେ ସୁଚିତ୍ରାର କକା ଶ୍ୱଶୁର ଆସି ସମାଧାନର ସୂତ୍ରରେ ନିଜେ ଜିମା ପଡି ଜାମିନରେ ଭାଇ ଏବଂ ଅନ୍ୟ ଦୁଇ ଆସାମୀଙ୍କୁ ଖଲାସ କଲେ।

ଚିରାଚରିତ ରଙ୍ଗବଦଳା ବାରମାସୀ ଚଢେଇ ମୁଁ ଦେଖିଛି। ନୀତିନିଷ୍ଠ ହୋଇ ଯେ ସୁଚିତ୍ରାର ପରିବାର ସଦସ୍ୟମାନେ ସୁଚିତ୍ରା ପ୍ରତି ସମୁଚିତ ବ୍ୟବହାର ପ୍ରଦର୍ଶନ

କରୁଥିବେ ଏବଂ ସୁଖସନ୍ତୋଷରେ ପରିବାର ଚାଲିଥିବ ଏ ବିଶ୍ୱାସ ମୋର ନଥିଲା। ତଥାପି ଆଇନର ସମ୍ବେଦନଶୀଳ ଦୃଷ୍ଟିକୋଣ ଯୋଗୁଁ ନଷ୍ଟ ଚରିତ୍ର ନିଜକୁ ସଜାଡିବାର ସୁଯୋଗ ପାଉ। ଏହି ନ୍ୟାୟରେ ସୁଚିତ୍ରାକୁ ହିଂସାରେ କ୍ଷତାକ୍ତ କରିଥିବା ପରିବାର ଲୋକେ ବେଲ୍ ପାଇଥିଲେ। ଯନ୍ତ୍ରଣା ଜର୍ଜରିତ ମାନବାତ୍ମାର ମୁକ୍ତିର ସୂର୍ଯ୍ୟୋଦୟ ହେଉ ଏହି ଆଶାରେ ମୁଁ ସିପିଲି ଥାନାରେ ମୋର କର୍ତ୍ତବ୍ୟ ସମ୍ପାଦନରେ ବ୍ୟସ୍ତ।

ଏ ଘଟଣାଟି ପରେ ସିପିଲି ଥାନାର ରେଜିଷ୍ଟରରେ ଆହୁରି କେତେ ନୂଆ କେଶ୍ ଆସି ପୁରୁଣା ହେଲାଣି। ପାଖାପାଖି ଦୁଇଟି ଶ୍ରାବଣ ଆସି ତା'ର ପାଦଚିହ୍ନ ହଜାଇ ସାରିଲାଣି। ଭାଗ୍ୟବଶତଃ ମୋର ଅନ୍ୟତ୍ର ବଦଳି ମଧ୍ୟ ହୋଇନାହିଁ।

ଏଇ ସେପ୍ଟେମ୍ବର ମାସର କଥା ସୁଚିତ୍ରାକୁ ମୁଁ ଭୁଲିଯାଇଥିଲି। ମୋର ପୋଲିସ ଚାକିରୀର ଦାୟିତ୍ୱବୋଧ ଏବଂ ଘର ଜଞ୍ଜାଳର ପରିଧିରୁ ସୁଚିତ୍ରା ନାମ୍ନୀ ଚରିତ୍ରଟି ଅପସରି ଯାଇଥାଏ। ଜଗତ ମାନେ ହିଁ ପରିବର୍ତ୍ତନର ଗୋଟିଏ ପ୍ରବହମାନ ସ୍ରୋତ। ଏଠି କିଏ କେତେବେଳେ କେଉଁ ଭୂମିକାରେ ଅବତୀର୍ଣ୍ଣ ହେବ ସେ ସବୁ ହିସାବ ବାହାରେ। ନିଜର ଆତ୍ମୀୟ କେତେବେଳେ ଲକ୍ଷେ ଯୋଜନ ଦୂରରେ ତ ଅଚିହ୍ନା ଅଜଣା କେତେବେଳେ ଅତି ନିକଟରେ। କେତେବେଳେ ଅସ୍ତିତ୍ୱ ଆପଣାର ସ୍ଥାନରେ ନାହିଁତ କେତେବେଳେ ନୂଆ ଜାଗାରେ ନିଜର ଆଦର ସମ୍ମାନ ଅପର୍ଯ୍ୟାପ୍ତ।

ମୁଁ ଥାନାରେ ମୋ ଚେଆର ଉପରେ ବସିଥାଏ। ଦିନ ପ୍ରାୟ ଗୋଟାଏ ହେବ। ଏଥର ସୁଚିତ୍ରା ପୁନର୍ବାର ଆସିଲା। ପୂର୍ବବତ ମଳିନ ଚେହେରା। ଚବିଶ ପଚିଶ ବର୍ଷର ଯୁବତୀଟି ସତେ ଯେମିତି ମୁଣ୍ଡରେ ସିନ୍ଦୂର ମାରି ହତାଶାବୋଧର ଅଶ୍ରୁକୁ ଆଖି ପତା ତଳେ ଲୁଚାଇ ରଖିଛି।

ମୋର ଅନୁମତି ନେଇ ମୋ ପାଖକୁ ଆସିଲା । ସେ ଯାହା କହିଲା ଏବଂ ମେଡିକାଲ ରିପୋର୍ଟ ସହ ଡାକ୍ତରଙ୍କ ଫୋନ ନମ୍ବର ଦେଖାଇଲା ତାର ସାରାଂଶଟି ହେଲା, ତାର ତଥାକଥିତ ଅତ୍ୟାଚାରୀ ସ୍ୱାମୀଟି ତାର ବଦଭ୍ୟାସ ପରିତ୍ୟାଗ କରି ନୂତନ ଭବିଷ୍ୟତ ଗଢିବାର ସ୍ୱପ୍ନ ଦେଖାଇ ସୁଚିତ୍ରା ସହ ଭଲ ସମ୍ପର୍କ ରଖିଥିଲା। ସବୁ ଠିକ୍ ଠାକ୍ ଚାଲିଥିଲା ବେଳେ ହଠାତ୍ ଦିନେ ସ୍ୱାମୀର ପେଟରେ ଭୀଷଣ ଯନ୍ତ୍ରଣା ହେଲା । ଛୋଟ ମନୋହରୀ ଦୋକାନଟିଏ ଖୋଲି ଗୁଜୁରାଣ ମେଣ୍ଟାଉଥିବା ପରିବାରଟିରେ ସତେ ଯେମିତି ଅନେଶ୍ୱତ ମସିହାର ମହାବାତ୍ୟା। ସ୍ୱାମୀର ଚିକିତ୍ସା ପାଇଁ ଡାକ୍ତର ପରାମର୍ଶ କଲାପରେ ସୁଚିତ୍ରା ଆସିଥିଲା କିଛି ଆର୍ଥିକ ସାହାଯ୍ୟ ମୋ ଠାରୁ ପାଇବା ଆଶାରେ। ଡାକ୍ତର କହିଥିଲେ ଅପରେସନ୍ ନହେଲେ ସ୍ୱାମୀର ଶରୀର ଅଧିକ

ଖରାପ ହେବ। ଯେଉଁ ସ୍ୱାମୀ ଦିନେ ଶତ୍ରୁଥିଲା ସେହି ସ୍ୱାମୀ ବର୍ତ୍ତମାନ ତା ମନ ମନ୍ଦିରରେ ସାକ୍ଷାତ ଦେବତା। ସେ ଦେବତାଙ୍କ ମୂର୍ତ୍ତିଟି ଭାଙ୍ଗିଯିବା ପୂର୍ବରୁ ସେ କିଭଳି ମୂର୍ତ୍ତିଟିକୁ ନବକଳେବର ରୂପଦେବ ସେଥିପାଇଁ ବ୍ୟଗ୍ର। ନାରୀର ଏଭଳି ରୂପରେ ମୁଁ ବିଶ୍ୱନିୟନ୍ତାଙ୍କ ସର୍ବୋତ୍ତମ ସୃଷ୍ଟିକୁ ସାମ୍ନାସାମ୍ନି ହେବାର ସୁବର୍ଣ୍ଣ ସୁଯୋଗ ପାଇଥିଲି ବୋଲି ବିଚାରି ପକେଟ ଅଣ୍ଡାଳି ଦୁଇ ହଜାର ଟଙ୍କାର ନୋଟଟିଏ ବଢାଇ ଦେଇ ତାର ଫେରିବାର ରାସ୍ତାକୁ ଚାହିଁ ରହିଲି।

ସେ ଫେରିବା ସମୟରେ ବାରଣ୍ଡାରେ ଦୁଇଟି ବଣି ଚଢେଇ ବସିଥିଲେ। ପରସ୍ପର ମଧ୍ୟରେ ସେମାନଙ୍କର ଥଣ୍ଟରେ ଚୁମ୍ବନ ଦିଆନିଆର ଦୃଶ୍ୟ ପରିବେଶକୁ ବେଶ୍ ହାଲୁକା କଲାଭଳି ଅନୁଭୂତି ସାଉଣ୍ଟିଲି। ବାହାରେ ଶୀତଳ ପବନ ହାଲ୍‌କା ହାଲ୍‌କା ବହୁଥିଲା।



# ମା' ଆଦ୍ୟାଶକ୍ତି

ଶାରଦୀୟ ଦୁର୍ଗାପୂଜାର ମାହାଷ୍ଟମୀ ତିଥି। ମୋର ଏଣ୍ଡ୍ରୋଏଡ ମୋବାଇଲର ହ୍ୱାଟସ୍‌ଆପ୍ ଅନ୍ କଲି। ପ୍ରାତଃଭ୍ରମଣ ସାରି ଆସି ନିଜର ଚ୍ୟାମ୍ବରରେ ବସି ହ୍ୱାଟସ୍‌ଆପ୍ ଅନ୍‌କରି କାହାଠାରୁ କେଉଁ କେଉଁ ମେସେଜ୍ ଅବା ଭିଡିଓ ଆସିଛି ତାକୁ ନିରୀକ୍ଷଣ କରିବା ମୋର ସବୁଦିନିଆ ଅଭ୍ୟାସ। ଦୀର୍ଘ ଛଅଦିନର ସରକାରୀ ଛୁଟିରେ କେବଳ ଘରେ ବସିରହିବା ଅତ୍ୟନ୍ତ ବିରକ୍ତିକର। ସହରର ବିଭିନ୍ନ ପୂଜାମଣ୍ଡପ ଗୁଡିକରେ ସୁଉଚ୍ଚ ତୋରଣ ସହ ସାଜସଜ୍ଜାରେ ଯେଉଁ ପ୍ରତିଦ୍ୱନ୍ଦ୍ୱିତା, ତାକୁ ଅତି ସୁନ୍ଦର ଭାବରେ କ୍ୟାମେରାରେ ଉଠାଇ ଜଣେ ବନ୍ଧୁ ମୋ ନିକଟକୁ ହ୍ୱାଟସ୍‌ଆପ୍ ମାଧ୍ୟମରେ ପଠାଇଛନ୍ତି। ପୂଜାମଣ୍ଡପଗୁଡିକର ଫଟୋ ସାଜସଜ୍ଜା ଦେଖି ମନରେ ଉତ୍ସାହ ଜାତ ହେଲା ଯେ, ଆଜି ମହାଷ୍ଟମୀ ତିଥିର ସନ୍ଧ୍ୟା ମାଆଙ୍କ ଦର୍ଶନରେ ବିତାଇବି। ଆଶାଟି ଚରିତାର୍ଥ କରିବା ନିମିତ୍ତ ଘରେ ଗୃହକାର୍ଯ୍ୟରେ ବ୍ୟସ୍ତଥିବା ମୋ ଧର୍ମପତ୍ନୀଙ୍କୁ କହିଲି, "ଆଜି ସନ୍ଧ୍ୟା ସମୟଟି ଆମ ସହରର ତଥା ଆମଘର ପାଖାପାଖି ହୋଇଥିବା ଦୁର୍ଗାପୂଜା ମଣ୍ଡପଗୁଡିକୁ ବୁଲିଗଲେ କେମିତି ହୁଅନ୍ତା ? "ସତେ ଯେମିତି ତାଙ୍କ ମନରେ ଇପ୍ସିତ କାମନାଟି ମା' ଆଦ୍ୟଶକ୍ତି ଶୁଣିପାରି ମୋ ମାଧ୍ୟମରେ ଚରିତାର୍ଥ କରିବାକୁ ପରିକଳ୍ପନା କରିଥିଲେ ! ଧର୍ମପତ୍ନୀଙ୍କ ମୁଖମଣ୍ଡଳରୁ ଶୁଭ୍ରଜ୍ୟୋତିସହ ସ୍ମିତ ହସଟିଏ ଫୁଟିଉଠିଲା, ସେ ଚଟାପଟ୍ ଉତ୍ତର ଦେଲେ, "କାହିଁକି ନୁହଁ ?" ସନ୍ଧ୍ୟା ସମୟରେ ବୁଲିଗଲେ ପୂଜା ମଣ୍ଡପରେ ସନ୍ଧ୍ୟା ଆଳତି ସହ ମଣ୍ଡପଗୁଡିକର ସାଜସଜ୍ଜା ଓ ରୁପା, ସୁନା, ଚାନ୍ଦିର ମେଢ ମଧ୍ୟ ଦେଖିହେବ। ମୋର ସଂସ୍କୃତ ଶ୍ଳୋକଟିଏ ମନେ ପଡିଗଲା, "ଶିବଃ ଶକ୍ତ୍ୟା ଯୁକ୍ତୋ। ଯଦି ଭବତି ଶକ୍ତ ପ୍ରଭାବିତ ନଚେ ଦେବ ଦେବଃ ଖଳୁ କଶକ ସ୍ପନ୍ଦୁତୁପି" -ଅର୍ଥାତ ଶକ୍ତିଯୁକ୍ତ ହେଲେ ଶିବ ବିଶ୍ୱପ୍ରକାଶ କରିପାରନ୍ତି ନଚେତ୍ ଶକ୍ତିହୀନ ହୋଇ ନିଜେ ହଲିବାକୁ ମଧ୍ୟ ସମର୍ଥ ହୁଅନ୍ତିନାହିଁ।

ସେ ଯାହାବି ହେଉ ସପତ୍ନୀକ ମୋଟର ସାଇକେଲ ଧରି ସହରର କେତେକ ପୂଜାମଣ୍ଡପ ବୁଲିବାର ମଜା ନିଆରା। ବିଭିନ୍ନ ବର୍ଗର, ବିଭିନ୍ନ ବର୍ଣ୍ଣର ତଥା ନୂଆପୁରୁଣା

ବନ୍ଧୁଙ୍କ ସହ ଏହି ପୂଜା ସମୟରେ ଅକସ୍ମାତ ଭେଟ ହେଲେ ପୁରୁଣା ସ୍ମୃତିସବୁ ଉଜ୍ଜୀବିତ ହୋଇଉଠନ୍ତି। ଅପରାହ୍ନ ସମୟରେ ସାମାନ୍ୟ ଝିପିଝିପି ବର୍ଷା ହୋଇଥିଲା। ସନ୍ଧ୍ୟା ବେଳାର ଆଗମନ ହେଲା, ପାଗ ସମ୍ପୂର୍ଣ୍ଣ ଅନୁକୂଳ । ତେଣୁ ମୁଁ ଏବଂ ମୋର ଧର୍ମପତ୍ନୀ ଦୁହେଁ ପୂଜାମଣ୍ଡପ ଭ୍ରମଣ ତଥା ଦୁର୍ଗା ମାଆଙ୍କ ଦର୍ଶନରେ ବାହାରିପଡିଲୁ। ସହରର ଟ୍ରାଫିକ ଭିଡ ଅତିକ୍ରମ କରି ମଟର ସାଇକେଲ ଯାଇ ପ୍ରଥମେ ଭୌମନଗର ସାଂସ୍କୃତିକ ମଣ୍ଡପ ଆଗରେ ଥିବା ଷ୍ଟାଣ୍ଡରେ ପହଞ୍ଚିଲା। ସତେ ଯେପରି ସୁଉଚ୍ଚ ରଙ୍ଗୀନ ଆଲୋକମାଳାରେ ସଜ୍ଜିତହୋଇ ଆମ ଦୁହିଁଙ୍କୁ ସ୍ୱାଗତ କରୁଥିଲା। ଭିତରେ ମା'ବିଶ୍ୱ ପ୍ରସବିନୀ ତଥା ବିଶ୍ୱସଂହାରିଣୀ ଏବଂ ସମସ୍ତଶକ୍ତିର ଉତ୍ସ ମହାଷ୍ଟମୀର ଆଳତିରେ ପୂଜା ପାଉଥାନ୍ତି । ମନଟି ଆନନ୍ଦମୟ ହୋଇଉଠିଲା। ସପତ୍ନୀକ ଯାଇ ଦୀପଦାନ କରିସାରିବା ପରେ, ପାଖରେ ପଡିଥିବା ପ୍ଲାଷ୍ଟିକ୍ ଚେଆରରେ ମୁଁ ବସିଗଲି। ସ୍ତ୍ରୀ କହିଲେ, "ମଣ୍ଡପର ଡାହାଣ ପାର୍ଶ୍ୱରେ ଭୋଗ ବଣ୍ଟାଯାଉଛି ସମସ୍ତେ ପ୍ରସାଦ ପାଉଛନ୍ତି ଆସ ଯିବା!" ମୁଁ କହିଲି, "ହଁ ତାହାତ ଠିକ୍। କିନ୍ତୁ ସେଠି ପ୍ରବଳ ଭିଡ। ଏଣୁ ମୁଁ ଏଠି ବସି ସନ୍ଧ୍ୟା ଆରତି ଦେଖୁଛି, ତୁମେ ଯାଇ ଭୋଗ ଆଣ! ଦୁହେଁ ବାଣ୍ଟିକରି କିଛି ଭୋଗପାଇବା, ତା'ପରେ ଅନ୍ୟ ମଣ୍ଡପଆଡେ ବୁଲିଯିବା।"

ମୁଁ ପ୍ଲାଷ୍ଟିକ ଚେଆରରେ ବସି ସନ୍ଧ୍ୟାଆଳତି ଦେଖି ମା ଦୁର୍ଗାଙ୍କ ଶକ୍ତି ତତ୍ତ୍ୱକୁ ମନେମନେ ସ୍ମରଣ କରୁଥାଏ ଠିକ୍ ଏତିକିବେଳେ ଜଣେ ଅଶିତିପର ବୟସ୍କା ବୃଦ୍ଧା ତାଙ୍କର ଆଠ-ନଅ ବର୍ଷର ନାତୁଣୀ ସହ ମଣ୍ଡପଆଡକୁ ଦର୍ଶନ ଉଦ୍ଦେଶ୍ୟରେ ନିଜ ବୋହୂ ସହାୟତାରେ ମୋ ଆଗରେ ନଇଁ ନଇଁ ଚାଲିଯିବାର ଦେଖିଲି। ମୋର ଚିନ୍ତାରେ ପୂର୍ଣ୍ଣଚ୍ଛେଦ ପଡିଲା ବୃଦ୍ଧା ଜଣକ ଅତି ପତଳା ସୂତାର ଶାଢୀ ପରିଧାନ କରିଥିଲେ। ଅଭାବୀ ପରିବାରର ବୃଦ୍ଧାଙ୍କର ପାକୁଆ ପାଟି, ଗାଲ ଦୁଇଟି ପଶିଯାଇ ମୁହଁର ହନୁହାଡ ଜଳଜଳ ହୋଇ ଦେଖାଯାଉଥିଲା। ପାଦଠାରୁ ଅଣ୍ଟା ପର୍ଯ୍ୟନ୍ତ ଲକ୍ଷ୍ୟ କଲେ ଜଣାପଡୁଥିଲା ସତେ ଯେମିତି ହାଡଗୁଡିକ ମାଟିଆ ରଙ୍ଗର ସରୁ ଚମଡାରେ ଶକ୍ତ ଭାବରେ ଗୁଡାଇ ଦିଆଯାଇଅଛି। ପଞ୍ଜରାହାଡ ଓ ପିଠିର ତଥା ଛାତିର ରିବସ୍ ସବୁ ଗଣି ହୋଇଯିବ। ମଧ୍ୟ ବୟସ୍କା ବୋହୂଟି ମାଆ ମାଆ ବୋଲି ସମ୍ବୋଧନ କରି ବୃଦ୍ଧାଙ୍କ ହାତଧରି ମୃଣ୍ମୟୀମୂର୍ତ୍ତି ନିକଟକୁ ଭିଡଭିତରେ ହାତଧରି ନେବାରେ କୌଣସି ହେଳା କରୁନଥିଲା। ଭିଡଭିତରେ ଯେଉଁ ବୃଦ୍ଧାଜଣକୁ ସମ୍ଭାଳିବା ଅସମ୍ଭବ, ସେହି ବୃଦ୍ଧା କିନ୍ତୁ ନିଜ ନାତୁଣୀର ହାତଧରି ତାକୁ କିଭଳି ଯତ୍ନସହକାରେ ମା ଦୁର୍ଗାଙ୍କର ଦର୍ଶନ କରାଇବେ ସେଥିପାଇଁ ବ୍ୟଗ୍ର। ଲୋଚାମୋଚା, ଦେହ ଫୁଙ୍ଗୁଳା ପ୍ରାୟ, ହାତ ଏବଂ ପାଦର ହାଡ ବାରି

ହୋଇପଡୁଥିବା ଏହି ବୃଦ୍ଧାଙ୍କୁ ଦେଖି ମୁଁ ଆଦ୍ୟାଶକ୍ତି ବିଶ୍ୱପ୍ରସବିନୀ ମାଆଙ୍କ ଦର୍ଶନକୁ ସଂପୂର୍ଣ୍ଣ କଲିବୋଲି ମନରେ ଧାରଣା ଦୃଢ଼ୀଭୂତ ହେଲା। ବୃଦ୍ଧାଜଣକ ନିଜର ବୋହୂର ହାତ ଧରି ଧରି ପ୍ରସାଦ ବଣ୍ଟାଯାଉଥିବା ସ୍ଥାନରେ ପହଞ୍ଚି କିଛିସମୟ ପରେ ହାତରେ ଖଲିଦନା ଭର୍ତ୍ତି ଖେଚୁଡ଼ି ଏବଂ ପାଚିଲା କଦଳୀ ଧରି ନଇଁଯାଇଥିବା ଅଣ୍ଟାକୁ ସଳଖିବାର ପ୍ରଚେଷ୍ଟା ଜାରି ରଖି ଅଙ୍କାବଙ୍କା ପାଦପକାଇ ଆସି ସାନନାତୁଣୀ ନିକଟରେ ମୋ ସାମ୍ନାରେ ପୁନର୍ବାର ଉପସ୍ଥିତ ହେଲେ ଏବଂ ସ୍ନେହରେ ସାନଝିଅଟିର ପାଟିରେ ପର୍ଯ୍ୟାପ୍ତ ପରିମାଣର ଖେଚୁଡ଼ି ଏବଂ କଦଳୀ ଖୁଆଇବା ସମୟରେ ସାନ ଝିଅଟି ଅଝଟ ହୋଇ, "ନାଁ - ନାଁ ମୁଁ ଖାଇବି ନାହିଁ ବୋଲି କହିଲା। କିନ୍ତୁ ବୃଦ୍ଧା ଜଣକ ଅତି ସ୍ନେହ ସରାଗରେ ସାନ ଝିଅଟିକୁ ଖୁଆଇବାରୁ ନିବୃତ୍ତ ହେଉନଥିଲେ। ମାତୃଶକ୍ତି ନିମିତ୍ତ ହୃଦୟରେ ଗଭୀରଭକ୍ତି ନେଇ ଯେଉଁ ଉଦ୍ଦେଶ୍ୟରେ ମୁଁ ମଣ୍ଡପ ବୁଲିଯାଇଥିଲି, ତାହା ଅଷ୍ଟମୀ ତିଥିରେ ସଂପୂର୍ଣ୍ଣ ହେଲା। ମାତୃଜାତି ପୂଜନୀୟା ତଥା ବନ୍ଦନୀୟା, ଗୀତାରେ ଉଲ୍ଲେଖ ଅଛି, ଯାହାକୁ ପ୍ରକୃତି, ମାୟା ବା ଯୋଗମାୟା ଆଖ୍ୟା ଦିଆଯାଇଛି, ସେହିଁ ଜଗଜ୍ଜନନୀ ରୂପେ ସୃଷ୍ଟି ପ୍ରାରମ୍ଭରୁ ଅଛନ୍ତି। ମାତୃଶକ୍ତିର ପ୍ରାଧାନ୍ୟ ଏହିପରି ବୃଦ୍ଧାଙ୍କ ପାଖରେ ଆଜି ମଧ ପ୍ରତିପାଦିତ କରେ ଯେ, ଶକ୍ତି ସମସ୍ତ ପଦାର୍ଥରେ ବିଦ୍ୟମାନ। ତାହା କୌଣସି ବସ୍ତୁ ରୂପରେ ଆଖିକୁ ଦେଖାଯାଏ ନାହିଁ, କିନ୍ତୁ କାର୍ଯ୍ୟକାରି ପରିଦୃଷ୍ଟ ହୁଏ। ମୁଁ ରହୁଥିବା ସହର କ'ଣ, ଭାରତୀୟ ସମାଜରେ ନାରୀଟିଏକୁ ପୁରୁଷ ପରି ସମ୍ମାନ ଓ ସ୍ୱୀକୃତି ଆଜି ମଧ ମିଳିନାହିଁ। ସେ ନାରୀଟି ଯଦି ବିଧବା କିମ୍ବା ବୃଦ୍ଧା ହେଲା ତାହା ହେଲେ ତ କଥାସରିଲା। ପ୍ରାୟତଃ କୌଣସି ମଙ୍ଗଳ କାର୍ଯ୍ୟରେ ବୃଦ୍ଧା ଏବଂ ବିଧବାମାନଙ୍କୁ ଲୋଡ଼ାଯାଏ ନାହିଁ। ବୃଦ୍ଧା ବୟସରେ ଅପାଙ୍କ୍ତେୟ ପରି ନିଜ ନିଜର ଅଯାଚିତ ଆଶୀର୍ବାଦ ଉତ୍ତର ପିଢ଼ି ନିମନ୍ତେ ଢାଳିଦିଅନ୍ତି।

ମୁଁ ସନ୍ଧ୍ୟା ଆଳତି ସମୟରେ ପୂଜାମଣ୍ଡପରେ ସପତ୍ନୀକ ମୋର ଅସ୍ତିତ୍ୱକୁ ସଂପୂର୍ଣ୍ଣ ଭୁଲିଯାଇଥିଲି। ମୋର କାହିଁକି କେଜାଣି ଇଛା ହେଲା, ସେହି ଅପରିଚିତା ପୂର୍ଣ୍ଣାଙ୍ଗ ବୃଦ୍ଧାଙ୍କୁ ନମସ୍କାରଟିଏ କରିବି। ତେଣୁ ଯନ୍ତ୍ରବତ୍ ଚେୟାରରୁ ଉଠି ସେ ଅପରିଚିତା ବୃଦ୍ଧା ଏବଂ ସାନଝିଅ ନିକଟକୁ ଚାଲିଲି। ପାଖରେ ପହଞ୍ଚି "ମାଉସୀ ନମସ୍କାର!" କହିଛିକି ନାହିଁ। ମୋର ପତ୍ନୀ ମୋତେ ପଛରେ ଠିଆହୋଇ ମୋ ଉଦ୍ଦେଶ୍ୟରେ, "ଶୁଣୁଛ ? ହେଇଟି ଶୁଣୁଛ ?" ବୋଲି ଡାକଦେଲେ। ବୃଦ୍ଧା ନାରୀଜଣକ ମୋର "ନମସ୍କାର" ଗ୍ରହଣ କରି ଆଶ୍ଚର୍ଯ୍ୟ ଚକିତ ହୋଇ ମୋ ମୁହଁକୁ ଚାହିଁ ରହିଥିବା ସମୟରେ ମୁଁ ପତ୍ନୀଙ୍କ ନିକଟକୁ ଫେରିଆସିଲି। ପତ୍ନୀ ମଧ ଆଶ୍ଚର୍ଯ୍ୟଭରା ଦୃଷ୍ଟିରେ ମୋ

ଉଦ୍ଦେଶ୍ୟରେ କହିଲେ, "ମାଉସୀ ବୋଲି ଡାକି ଯେଉଁ ବୁଢ଼ୀଟିକୁ ତୁମେ ନମସ୍କାର କଲ ସେ କିଏ ? ମୁଁ ସଂପୂର୍ଣ୍ଣ ତାହା ମିଛର ଆଶ୍ରୟ ନେଲି। ମୋ ପତ୍ନୀଙ୍କୁ କହିଲି, "ସେ ମୋର ପୁରୁଣା ପରିଚିତା ମାଉସୀ"। ଆମ ବିବାହ ପୂର୍ବରୁ ବାପାଙ୍କୁ ଯେଉଁ କ୍ୱାର୍ଟର ମିଳିଥିଲା ସେହି କ୍ୱାର୍ଟର ପାଖରେ ଗୋଟିଏ ଛୋଟ ବସ୍ତିଥିଲା। ସେ ବସ୍ତିରେ ମାଉସୀ ରହୁଥିଲେ। ମୁଁ ପିଲାଦିନର ଜୀବନ କାହାଣୀରେ ବୃଦ୍ଧାଙ୍କୁ ଅତି ଆପଣାର ଅମ୍ନୀୟ "ନିଜ ସଂପର୍କୀୟ ମାଉସୀ"ରେ ରୂପାନ୍ତରିତ କରି ପତ୍ନୀଙ୍କ ଧ୍ୟାନକୁ ଦିଗହରା କଲି। ସେ ମଧ୍ୟ ସବୁ ବୁଝିଗଲା ଭଳି ମୁଣ୍ଡଟୁଙ୍ଗାରୀ ମୋ କଥାକୁ ସତବୋଲି ଧରିନେଲେ। ମୋ ପତ୍ନୀ ହସି ହସି କହିଲେ "ଯାହା କୁହ ତୁମର ସ୍ମୃତିଶକ୍ତି ଅତି ପ୍ରଖର। ମାନିବାକୁ ପଡିବ, ପିଲାଦିନର ପରିଚିତ ବ୍ୟକ୍ତିଙ୍କୁ ତୁମେ ତାଙ୍କର ବୃଦ୍ଧା ବୟସରେ ମଧ୍ୟ ଠିକ୍ ଚିହ୍ନିପାରୁଛ। ଏଭଳି ବିରଳ ବ୍ୟକ୍ତିତ୍ୱ ବୋଧହୁଏ ହଜାରରେ ଗୋଟିଏ ହେବେକି ନାହିଁ ସନ୍ଦେହ!ହଉ ଚାଲ ଗାଡି ଷ୍ଟାର୍ଟକର ଆଉ କେଉଁ ମଣ୍ଡପଆଡେ ବୁଲିଯିବା।" ମୁଁ ପତ୍ନୀଙ୍କୁ ଧରି ମୋଟର ସାଇକେଲ ଷ୍ଟାଣ୍ଡଆଡେ ପାଦ ବଢାଇଲି। ମୋ ସାଙ୍ଗରେ ପତ୍ନୀ ମଧ୍ୟ ପାଦକୁ ପାଦ ମିଶାଇ ଚାଲିଲେ। ସନ୍ଧ୍ୟା ଆଳତି ଏବଂ ଘଣ୍ଟା ଧ୍ୱନିରେ ପୂଜାମଣ୍ଡପ ଏବଂ ଆଖପାଖ ଅଞ୍ଚଳ ଏବଂ ସହରର ରାସ୍ତା ଦୁଲୁକି ଉଠୁଥିଲା। ସହରର ବାସିନ୍ଦାମାନେ ପୂଜାମଣ୍ଡପ ଅଭିମୁଖୀ ହେଉଥିଲେ। ସଭିଙ୍କ ଉଦ୍ଦେଶ୍ୟ ମଣ୍ଡପରେ ମାଆ ଆଦ୍ୟାଶକ୍ତିଙ୍କୁ ଦର୍ଶନ କରିବେ।



# ସତ୍ୟ ଓ ଶୁଭ ସୂଚନା

ମୋର ଏଇସହରକୁ ବଦଳିହୋଇ ଆସିବାର ପ୍ରାୟ ଦୁଇବର୍ଷ ପାଖାପାଖି ହେଲାଣି । ମୋର ଅଫିସ ସାମ୍ନାରେ ରିଲାଏନ୍ସ ମଲ୍ । ମୁଁ ଦିନେଦିନେ ପ୍ରାୟତଃ ମଧ୍ୟାହ୍ନରେ କିଛି ଖାଇବାପାଇଁ ମଲ୍ ତଳେ ବାହାରେ ଲାଗୁଥିବା ଚଟପଟି ଜଳଖିଆ ଦୋକାନଗୁଡିକୁ ଯାଇଥାଏ । ଇଡିଲି, ଦୋଷା, ମୋମୋ ଅବା ଚାଟ୍ ଇତ୍ୟାଦିରୁ କିଛି ଖାଇଥାଏ । ଏହି ଯିବା ଆସିବା ମଧ୍ୟରେ ମଲ୍ ସାମ୍ନାରେ ଥିବା ବିରାଟ ଚଟାଣରେ ବସି ରତ୍ନପଥର ଓ ମୁଦି ବିକୁଥିବା ମୁଜିବୁର୍‌ସହ ସ୍ୱତଃପ୍ରବୃତ୍ତ ଭାବରେ ପରିଚୟ ହୋଇଗଲା । ମୁଁ ତା'ସହ ଗପସପ କରି ମୋର ମନ ହାଲକା କରେ । ଗରିବ ମୁଜିବୁର୍‌ର ପରିବାର ତା'ର ଏଇ ରତ୍ନପଥର ବ୍ୟବସାୟ ଯୋଗୁଁଚାଲେ । ସେ ପାନ୍ନା, ପୋଖରାଜ ପୋହଳା, କ୍ୟାଟସ୍ ଆଇ ଓ ଗୋମେଦ ଏହିଭଳି ଭିନ୍ନଭିନ୍ନ କିସମର ପଥରରେ ସଜ୍ଜିତ ଗୋଟିଏ କାଠର ସୁଟ୍‌କେସ ଯେଉଁଥିରେ କାଚର ଘୋଡଣୀ ଥିଲା ତାକୁ ଧରିଥାଏ । ନିଜର କାନ୍ଧରେ ଗୋଟିଏ ଝୁଲାମୁଣି ଝୁଲାଇଥାଏ, ଏଇ ସହରର ଚଳଚଞ୍ଚଳ ଇଲାକାରେ ଥିବା ବ୍ୟସ୍ତବହୁଳ ରିଲାଏନ୍ସ ମଲ୍ ସାମ୍ନାରେ ପ୍ରତ୍ୟେକଦିନ ଦଶଟା ବାଜିଲେ ପହଞ୍ଚି ତା'ର ଛୋଟକାଟର ପସରା ମେଲାଇଦିଏ । ଦିନେ ଦିନେ ଆଗତ ଭବିଷ୍ୟକୁ ଜାଣିବାର ପ୍ରବଳ ଉତ୍ସୁକ ବ୍ୟକ୍ତିମାନେ ଆସି ତା'ର ପରାମର୍ଶନେଇ ମୁଦିଟିଏ କିଣିନେଇ ଶୁଭବେଳା ଦେଖି ଆଙ୍ଗୁଠିରେ ପିନ୍ଧନ୍ତି ।

ମୁଜିବୁର୍ ମୁସଲମାନ ସଂପ୍ରଦାୟର ହେଲେ ମଧ୍ୟ ହିନ୍ଦୁ ଦେବାଦେବୀ, ହିନ୍ଦୁ ସଂସ୍କୃତି ଓ ଦର୍ଶନରେ ବେଶ୍ ରୁଚିରଖେ । ହିନ୍ଦୁଦର୍ଶନ ବିଶେଷ କରି ଭବିଷ୍ୟତକୁ ନେଇ ପ୍ରଚଳିତ ଜ୍ୟୋତିଷଶାସ୍ତ୍ରକୁ ସମ୍ମାନ ଦେଇଥାଏ । କଦବା କ୍ୱଚିତ କେଉଁ ବ୍ୟକ୍ତି ତାକୁ ତା'ର ଧର୍ମ ଓ ବିଶ୍ୱାସକୁ ନେଇ ପ୍ରଶ୍ନଟିଏ ପଚାରିଲେ ଚଟାପଟ କହିଥାଏ "ମୁଁ ଯେଉଁ ମାଟି ପାଣି ପବନରେ ଜନ୍ମିଛି ବଢିଛି କିପରି ନ ମାନିବି ?" ଯିଏ ଶୁଣେ ଏଇ ଦୁଇପଦ ଉତ୍ତର, ସେହି ଭଦ୍ରବ୍ୟକ୍ତି ନୀରବିଯାଆନ୍ତି । ତାଙ୍କ ମୁହଁରୁ ବଚନ ସ୍ଫୁରେ ନାହିଁ ଯୁକ୍ତି ନଥାଏ ।

ମୁଁ ତା'ପାଖରୁ କେବେହେଲେ ମୁଦି ଅବା ରତ୍ନପଥର କିଣିନଥାଏ। ତଥାପି ମୁଁ ତା'ମୁହଁରେ ଅବା ତା କଥାରେ "ନୀରସ ଭାବ" ଅବା ମୁଁ ଗ୍ରାହକ ନସାଜିବାର ଅବଶୋଷର କୌଣସି ଲକ୍ଷଣ ତାଠାରେ ଆବିଷ୍କାର କରିନାହିଁ।

ଦିନେ ଦିନେ ସେ ଜ୍ୟୋତିଷଶାସ୍ତ୍ର ବିଷୟରେ ଆଲୋଚନା କରିବା ସମୟରେ ମୋତେ ଅନେକ କୌତୁହଳ ପୂର୍ଣ୍ଣ ଛୋଟଛୋଟ ଟିପ୍ସ କହେ, ଏଇ ଯେମିତିକି, "ଯଦି ତୁମେ ଭୋରବେଳା ଠିକ୍ ଶଯ୍ୟା ତ୍ୟାଗ କରିବା ସମୟରେ ଘରପାଖ ମନ୍ଦିରର ଘଣ୍ଟଧ୍ୱନୀ ଅବା ଶଂଖଧ୍ୱନୀ ଶୁଣ ଅବା ଘରୁ କୌଣସି କାର୍ଯ୍ୟରେ ବାହାରିବା ସମୟରେ ଶୁଣ ତେବେ ସେହିଦିନଟି ଅତ୍ୟନ୍ତ ମଙ୍ଗଳମୟ" । "ଘରୁ ବାହାରି କାର୍ଯ୍ୟ ଅନୁକୂଳ କରିବା ସମୟରେ ଯଦି ସାନ ଶିଶୁଟିଏ ହସି ହସି ତୁମ ଆଡକୁ ଚାହେଁ ତେବେ ଦିନଟି ଅତ୍ୟନ୍ତ ଶୁଭ, ସବୁ ମନୋକାମନା ପୂର୍ଣ୍ଣହେବ।"

ମୁଜିବୁର୍ ମୁଣ୍ଡରେ ମୁସଲମାନ ସଂପ୍ରଦାୟ ପିନ୍ଧୁଥିବା ଧଳା ଚେପଟା ଛୋଟ ଟୋପିଟି ବେଶ୍ ସୁନ୍ଦର ଭାବରେ ପିନ୍ଧି ପ୍ରତିଦିନ ତା'ର ପସରା ଏଇ ମଲ୍‌ସାମ୍ନାରେ ଲଗାଏ। ତା'ର ପସରାମେଲା ଦେଖି ଦିନେ ଦିନେ ଅନେକ ଲୋକ ନ ଦେଖିଲାଭଳି ବାଟଭାଙ୍ଗି ନିଜ ନିଜ ରାସ୍ତାରେ ଚାଲିଯାଆନ୍ତି ତ ଦିନେ ଦିନେ ମୁଜିବୁର୍ ଏଇ ଭାଗ୍ୟ ଭବିଷ୍ୟ ଉପରେ ବିଶ୍ୱାସ ରଖୁଥିବା କିଛି ଲୋକଙ୍କୁ ବେଶ୍ ସୁନ୍ଦର ଓ ମନମୋହିଲା ଭଳି କଥା କହି ରତ୍ନପଥର ଓ ମୁଦି ବିକ୍ରି କରିଦିଏ। ମୁଁ ମନେ ମନେ ଅନେକଥର ଭାବିଛି ଯଦି ସତରେ ମୁଜିବୁର୍ ଏଇସହରର ଜନସାଧାରଣଙ୍କର ଭାଗ୍ୟକୁ ତା'ର ଚମତ୍କାରୀ ମୁଦି ଓ ରତ୍ନପଥର ଦ୍ୱାରା ପରିବର୍ତ୍ତନ କରିଦେଇ ସୁନ୍ଦର ଓ ଗ୍ରହଣୀୟ ଆନନ୍ଦଦାୟକ ଜୀବନର ରାସ୍ତା ଖୋଲିଦେଇ ପାରୁଛି, ତେବେ ସେ ଏତେଦିନ ଧରି ଏଇ ମଲ ସାମ୍ନାରେ ନିଜର ଅନିଶ୍ଚିତ ଭାଗ୍ୟଟିକୁ ଧରି କାହିଁକି ଜୀବନ ବିତାଉଛି ? ସେ ତ ନିଜେ ମୋତେ ଦିନେ ତାର ଦୁଇ ସନ୍ତାନ କନ୍ୟା ପରବିନ ଓ ପୁଅ ମୋସିମ୍‌ଙ୍କ ପାଇଁ ଚିନ୍ତାକରି ତାଙ୍କର ପାଠପଢା ଓ ଭବିଷ୍ୟତ ଯୋଜନାପାଇଁ ଅର୍ଥର ଘୋର ଅଭାବକୁ ସମ୍ନା କରୁଛି ବୋଲି କହୁଥିଲା। ଆଉ ନିଜର ଅଷ୍ଟମଶ୍ରେଣୀ ପାଠପଢା ଯୋଗ୍ୟତା ଯୋଗୁଁ ଆଜି ସେ ଏହି ରତ୍ନପଥର ବିକ୍ରୀ ଓ ଭବିଷ୍ୟତରେ ଗଢା ଫୁଟପାଥ୍‌ର ଆଶ୍ରୟ ନେଇଛି।

ହୁଏତ "ଏହି ବେଉସା ଓ ସ୍ଥିତି ତାକୁ ତା'ର ପ୍ରାରବ୍ଧଜନିତ ଜୀବଦ୍ଦଶାରୁ ପ୍ରାପ୍ତ" ବୋଲି ବିଚାର କରି ମୁଁ ନୀରବ ରହେ।

ଦିନେ ହଠାତ ମୋ ବାପାଙ୍କର ଛାତିରେ ଅହେତୁକ ହୃତସ୍ପନ୍ଦନ ଆରମ୍ଭ ହେଲା। ମୋର ବୃଦ୍ଧପିତା ଓ ମାତା ଉଭୟେ ମୋ ସହ ମୋର କ୍ୱାଟର୍‌ରେ ରହୁଥିଲେ। ବାପା

ରିଟାୟାର୍ଡ ହେଡମାଷ୍ଟର। ଗାଁର ହାଇସ୍କୁଲ ପ୍ରତିଷ୍ଠା ସହ ଭଲ ଶିକ୍ଷକଟିଏ ହେବାର ଗୌରବ ସେ ପାଇଛନ୍ତି। ସେ ରାଷ୍ଟ୍ରପତିଙ୍କ ଠାରୁ ଉତ୍ତମ ଶିକ୍ଷକ ରୂପେ ସମ୍ମାନିତ ଓ ପୁରସ୍କୃତ ମଧ୍ୟ ହୋଇଛନ୍ତି। ବର୍ତ୍ତମାନ ବୃଦ୍ଧାବସ୍ଥାରେ ତାଙ୍କର ଡାଇବିଟିସ୍, ହାଇବ୍ଲଡପ୍ରେସର ଓ ନ୍ୟୁରୋ ପ୍ରୋବ୍ଲେମ ପ୍ରାୟତଃ ଲାଗି ରହୁଥିଲା ମୁଁ ଆମ ସହରର ବେଶ୍ ଜଣାଶୁଣା ଓ ପ୍ରତିଷ୍ଠିତ ଡାକ୍ତର ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ଠାରୁ ତାଙ୍କର ଚିକିତ୍ସା କରୁଥିଲି ଓ ତାଙ୍କରି ପରାମର୍ଶରେ ତାଙ୍କର ଦେଖାଚାହାଁ କରୁଥିଲି।

ହଠାତ୍ ହାର୍ଟ ଆଟାକ୍ ହେଲା ନା କ'ଣ ? ସେ କାହିଁକି ଏପରି ଛାତିକୁ ଧରି କଷ୍ଟ ହେଉଛି ବୋଲି କହୁଛନ୍ତି। ଚିନ୍ତାକରି ମୁଁ ତାଙ୍କୁ ଏମ୍ସ ହସ୍ପିଟାଲକୁ ନେବାର ବ୍ୟବସ୍ଥା କଲି।

ବାପାଙ୍କୁ ହସ୍ପିଟାଲରେ ଆଡ୍‌ମିଟ୍ କରିବା ପରେ ଡାକ୍ତରଙ୍କ ପରାମର୍ଶରେ ସେହି ହସ୍ପିଟାଲରେ ଅନେକ ପରୀକ୍ଷା ନିରୀକ୍ଷା ଚାଲିଲା। ବାପା ଦିନକୁ ଦିନ ଦୁର୍ବଳରୁ ଦୁର୍ବଳତର ହେବାକୁ ଲାଗିଲେ।

ଯେଉଁ ବାପା ମୋତେ ପିଲାଟି ଦିନରୁ ସ୍ନେହ, ଶ୍ରଦ୍ଧା, ଆକଟ, ଉପଦେଶ ଦେଇ ଛୋଟରୁ ବଡ କରିଛନ୍ତି, ସେ ଯେ ଦିନେ ସଶକ୍ତ, ନିଷ୍ଠାପର, ଯତ୍ନରେ ହେଳା କରୁନଥିବା ଘରର ମୁରବୀଥିଲେ ସେ କଥା ଭାବିଲେ ମନରେ ଅତୀତର ସ୍ମୃତିକୁ ନେଇ ଅନେକ ଅବସୋସ୍ ଭରିଦେଲା।

ବାପାଙ୍କ କଥା ଓ ଉପଦେଶ ମୋ ଭଳି ଜଣେ ଦୁଷ୍ଟପିଲାକୁ ସାନବୟସରେ ସଞ୍ଜୀବନୀର ସ୍ପର୍ଶଭଳି ଜଣେ ସାଧାରଣ ଦୁଷ୍ଟପିଲାରୁ ଭଲ ଆଜ୍ଞାକାରୀ ମେଧାବୀ ଛାତ୍ରରେ ପରିଣତ କରିଥିଲା। ମୁଁ ଆଜି ଶିକ୍ଷା ବିଭାଗରେ ଜଣେ ଉଚ୍ଚପଦସ୍ଥ ଅଧିକାରୀ ରୂପେ ପରିଚିତ।

ମଣିଷ ଜୀବଦ୍ଦଶାରେ ଅନେକ ପରିବର୍ତ୍ତନକୁ ସାମ୍ନା କରିଥାଏ। ଭଲ ସଂଭାବନାମୟ ସ୍ଥିତି ଆସିଲେ ପରିବର୍ତ୍ତନକୁ ସ୍ୱାଗତ କରେ ଓ ଯଦି ରୁକ୍ଷ ଓ ବିସମ ସ୍ଥିତି ଆସେ ତେବେ ମନଦୁଃଖରେ ଭାଙ୍ଗିପଡେ। ଆଜି ବାପାଙ୍କର ଜୀବନଚକ୍ରର ସନ୍ଧ୍ୟା ସମୟ। ବାପାଙ୍କର ଉପସ୍ଥିତି ବୋଧହୁଏ ଆଉ ଅଧିକ ଦିନ ଆମ ଗହଣରେ ପାଇବୁ ନାହିଁ। ଏଭଳି ଅନେକ ଭାବନାର ଜାଲରେ ସତେ ଯେମିତି ମୁଁ ଛନ୍ଦି ହୋଇ ପଡିଥିଲି।

ସେଦିନ ରବିବାର। ଶଯ୍ୟାତ୍ୟାଗ କରିବା ସମୟ ସାମାନ୍ୟ ବିଳମ୍ବ ହୋଇଯାଇଥାଏ। କାନ୍ଥଘଣ୍ଟାରେ ନଜର ପକାଇଲି ଦିନ ନଟା ବାଜିବ। ତରତର ହୋଇ ନିତ୍ୟକର୍ମ ସାରିଲି। ଘରେ ଧର୍ମପତ୍ନୀ ସୁନନ୍ଦାଙ୍କୁ କହିଲି ଚା ଓ ଜଳଖିଆ ଦେଇଦିଅ ମୁଁ ପୂଜାକର୍ମ

ସାରି ତୁରନ୍ତ ହସ୍ପିଟାଲ ଆଡେ ଯିବି । ବାପା ଇତି ମଧ୍ୟରେ ହସ୍ପିଟାଲରେ ଚିକିତ୍ସାଧୀନ ଅବସ୍ଥାରେ ରହିବାର ଏକ ସପ୍ତାହ ହେଲାଣି । ଗତକାଲିଠାରୁ ତାଙ୍କ ଶରୀର ସାମାନ୍ୟ ସୁସ୍ଥତା ଆଡକୁ ଗତିକରୁଛି ।

ଘରେ କାନ୍ଥରେ ଟଙ୍ଗା ହେଇଥିବା ଶ୍ରୀଜଗନ୍ନାଥ ତୈଳ ଚିତ୍ରଟିକୁ ଚାହିଁ ପ୍ରଣାମ ଜଣାଇଲି । ଏତିକି ବେଳକୁ ସୁନନ୍ଦା ପୂର୍ବରୁ ପ୍ରସ୍ତୁତକରି ରଖିଥିବା ଜଳଖିଆ ଓ ଚା କପଟିକୁ ଆଣି ମୋର ଟି-ପୟ ଉପରେ ରଖିଦେଇ ପାଣିଗିଲାସେ ଆଣିବାପାଇଁ ଘରଭିତରକୁ ଚାଲିଗଲେ ।

ମୁଁ ଚଟାପଟ ଜଳଖିଆ, ଚା ଖାଇସାରି ଆମଘର ଗେଟକବାଟ ଖୋଲି ଏମ୍ସ ହସ୍ପିଟାଲ ଅଭିମୁଖେ ମୋର କାରଟିକୁ ମୁହାଁଇଲି ।

ମୋ କାରଟି ଗତିଶୀଳ ହେବା ସମୟରେ ଆମ ପଡୋଶୀ ଇଞ୍ଜିନିୟର ଶୁଭକାନ୍ତଙ୍କର ଦୁଇବର୍ଷର ଶିଶୁପୁତ୍ରଟି ତାଙ୍କ ଘରସମ୍ନା ଗେଟପାଖରେ ଜେଜେମା କୋଳରେ କାଖହୋଇ ଖେଳୁଥିଲା । ମୋତେ ଦେଖିପାରି ଖିଲିଖିଲି ହୋଇ ହସିଉଠିଲା । ମୁଁ ଅତ୍ୟନ୍ତ ଧୀରଗତିରେ କାରଟିକୁ ଆମ ଘରସାମ୍ନା ଗଳିରେ ଚଳାଏ । ଅନ୍ତତଃ ପକ୍ଷେ ସାମ୍ନାଗଳିରେ ପଡୁଥିବା ତିନିଛକିଆ ରାସ୍ତାର ଡାହାଣ ପାର୍ଶ୍ୱରେ ଥିବା ରାମମନ୍ଦିର ନ ଆସିଲେ ମୁଁ ମୋର କାରର ବେଗ କେବେମଧ ବଢାଇନଥାଏ ।

ଘରୁ ହସ୍ପିଟାଲ ଅଭିମୁଖେ ବାହାରିବା ସମୟରେ ପ୍ରଥମେ ନିରୀହ ଶିଶୁର ହସହସ ମୁହଁଟି ଦେଖିଲି । ତା ପରେ ଯେତେବେଳେ ଆଗ ମୋଡରେ କାରର ଗତି ପୂର୍ବମୁହାଁ କଲି ସାମ୍ନା ହନୁମାନ ଓ ରାମଙ୍କ ମନ୍ଦିରରେ ଘଣ୍ଟଧ୍ୱନୀ ସହ ଶଂଖଧ୍ୱନୀକୁ ଶୁଣିଲି ।

ଏ ଦୁଇଟି ଘଟଣା ଘଟିବାପରେ ମୋର ହଠାତ ମୁଜିବୁରର କେଇପଦ ଭାଗ୍ୟ ଓ ଭବିଷ୍ୟକୁ ନେଇ କହିଥିବା କଥା ମନେପଡିଲା । ଦିନେ ସେ କହିଥିଲା ଘରୁ ବାହାରିବା ସମୟରେ ଶିଶୁଟିଏର ହସହସ ମୁହଁ ଓ ମନ୍ଦିରର ଘଣ୍ଟଧ୍ୱନୀ ଶୁଣିଲେ ଓ ଦେଖିଲେ ସେହିଦିନଟି ଶୁଭଙ୍କର ହୋଇଥାଏ ।

ମୋର ମନେ ହେଲା "ବୋଧହୁଏ ଆଜି ବାପା ସମ୍ପୂର୍ଣ୍ଣ ସୁସ୍ଥ ହୋଇଯିବେ ଓ ମୁଁ ତାଙ୍କୁ ଡିସ୍ଚାର୍ଯକରି ଘରକୁ ନେଇଆସିପାରିବି ।"

ମୁଁ ହସ୍ପିଟାଲରେ ବାପାଙ୍କ ବେଡ ପାଖରେ ପହଂଚିଲି, ଡାକ୍ତର ଓ ନର୍ସ ଆସି ସ୍ୱାସ୍ଥ୍ୟ ପରୀକ୍ଷା କରି ଫେରିଲେ । ବାପା ମୋ ଆଡେ ଚାହିଁ ରହିଲେ, ବୋଧହୁଏ କିଛି କହିବେ ବୋଲି ଭାବୁଥିଲେ ।

ମୁଁ ତାଙ୍କୁ କ'ଣ କହିବାକୁ ଚାହୁଁଛ ବୋଲି ପଚାରିବା ସମୟରେ ହଠାତ ସେ ଛାତିରେ ଯନ୍ତ୍ରଣା ବୋଧହୁଏ ଅନୁଭବ କଲେ। ଶଯ୍ୟା ଉପରେ ସେ ଠିକ ଭାବରେ କଡ ଲେଉଟାଇ ପାରୁନଥିଲେ । ମୁଁ କିଛି ଅଘଟଣ ଘଟିବା ପୂର୍ବରୁ ଡାକ୍ତରଙ୍କୁ ଡାକିବା ଉଦ୍ଦେଶ୍ୟରେ ଡାକ୍ତରଙ୍କ ଚ୍ୟାମ୍ବର ଆଡକୁ ଧାଇଁଲି।

ଡାକ୍ତର ଓ ନର୍ସ ଆସିଲେ, ପରୀକ୍ଷା ନିରୀକ୍ଷା କଲେ ମୋତେ କହିଲେ "ଆଇ.ସି.ୟୁ"ରେ ଭର୍ତ୍ତି କରିବାକୁ ପଡିବ। ମୋର ଅନୁମତି ଦେଇ ସେମାନେ ବାପାଙ୍କର ଚିକିତ୍ସା ନିମିତ୍ତ ଆଇ.ସି.ୟୁରେ ଭର୍ତ୍ତି କରିଦେଲେ।

ମାତ୍ର ଏକଘଣ୍ଟା ପରେ ଡାକ୍ତର ବାହାରକୁ ଆସିଲେ । ମୋ ନିକଟରେ ମୋର ପରିବାର ଯଥା ପୁଅ ଓ ଦୁଇ ଝିଅଙ୍କ ସହ ମୋର ଧର୍ମପତ୍ନୀ ଓ ମୋର ବଡଭାଇ ଭାଉଜ ସମସ୍ତେ ଉପସ୍ଥିତ ଥିଲେ। ଡାକ୍ତର ବାହାରକୁ ଆସି ଦୁଃଖ ପ୍ରକାଶ କରି କହିଲେ ଆମର ସମସ୍ତ ଚେଷ୍ଟା ସତ୍ତ୍ୱେ ବାପାଙ୍କୁ ଆମ୍ଭେମାନେ ବଂଚାଇ ପାରିଲୁ ନାହିଁ।

ମୁଁ ଜାଣିଛି ଜୀବନରେ ମୃତ୍ୟୁ ଧ୍ରୁବସତ୍ୟ। ଜୀବନଟା ବଂଚିବା ମୃତ୍ୟୁର ଏକ ପୂର୍ବ ପ୍ରସ୍ତୁତି ମାତ୍ର। ତେବେ ମୁଜିବୁର କହିଥିବା କଥାଟା କ'ଣ ସଂପୂର୍ଣ୍ଣ ସତ୍ୟ ଯେହେତୁ ମୁଁ ଘରୁବାହାରିବା ସମୟରେ ଶିଶୁର ହସ ଓ ମନ୍ଦିରର ଘଣ୍ଟ ତଥା ଶଂଖଧ୍ୱନୀ ଶୁଣିଥିଲି ତାହାର ଫଳାଫଳରେ ମୋର ବୟସ୍କ ବାପା ଯନ୍ତ୍ରଣା ନପାଇ ମୁକ୍ତି ଅବା ମୋକ୍ଷ ପାଇଗଲେ ଯାହାକି ଶୁଭଙ୍କର କଥାଟିଏ।

ମୁଁ ବାପାଙ୍କର ମୃତ୍ୟୁକୁ ଶୁଭମଙ୍ଗଳ ଘଟଣା ଭାବରେ ଦେଖି ମନକୁ ଆଜିମଧ ବୁଝାଏ ଯେ ଯାହା ସତ୍ୟ ତା'ର ଅନ୍ୟ ବିକଳ୍ପ ହିଁ ନାହିଁ।



# ଲକ୍‌ଡାଉନ୍ ଓ ଈଶ୍ୱରଙ୍କ ଗୁପ୍ତ ଯୋଜନା

ମଧ୍ୟ ବୟସ୍କା ସୁଲିର ପ୍ରଥମେ ଶ୍ୱାସରୁଦ୍ଧ ହେଲା । ତାପରେ ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗରେ ଯନ୍ତ୍ରଣା । ଛିଙ୍କ ଆଉ ଜ୍ୱରର ମଧ୍ୟ ଲକ୍ଷଣ ତା ଦେହରେ କିଛିଦିନ ଲାଗିରହିଲା ।  ମଣି ମାଝିର ସ୍ତ୍ରୀ ସୁଲିର ଶରୀରରେ ଏଭଳି ଅନେକ ରୋଗର ଅକଥନୀୟ ଉପଦ୍ରବ ।

ମଣି ମାଝି ଆଉ ସୁଲି ନିଜର ଆଠବର୍ଷର ନାବାଳକ ପୁଅ ଅଭିଷେକ ସହ ଏ ସହରର ଏକ ସରକାରୀ ଜମି ଉପରେ ଦୁଇ ବଖରା ଟିଣ ଚାଦର  ଛାତର ଖଣ୍ଡିଆ ଇଟାରେ ଗଢା ଘରେ ରୁହନ୍ତି । ତାଙ୍କ ଘର ପାଖରେ ଆଗ ପଛ ଦୁଇ ଧାଡି ଏମିତି ଅନେକ ଦିନ ମଜୁରିଆ, ଠେଲା ଦୋକାନୀଙ୍କ ଘର । ପରିବାର ସହ ଏମାନେ ସହରର ଛାତି ଉପରେ ଦିନରାତି ଏକକରି ବାବୁ ଭାୟାମାନଙ୍କ ପାଇଁ କାମ କଲେ ଯାଇ ଗୁଜୁରାଣ ମେଣ୍ଟିଥାଏ ।

ସହରର ମଧ୍ୟଭାଗରେ ଏକ ଚଳଚଞ୍ଚଳ ଇଲାକାରେ ଥିବା ଏକ ନିର୍ଦ୍ଦିଷ୍ଟ ବ୍ୟାଙ୍କ ଆଗରେ ମଣି ମାଝି ସକାଳ ନଅଟାରୁ ଦଶଟା ମଧ୍ୟରେ ଯାଇ ପହଞ୍ଚିଯାଏ । ସେଇ ନିର୍ଦ୍ଦିଷ୍ଟ ବ୍ୟାଙ୍କ ସାମ୍ନା ପଡିଆରେ ତା ପରି ଅନେକ ମଜୁରିଆ ପ୍ରତ୍ୟେକ ଦିନ ପହଞ୍ଚିଥାନ୍ତି । ଉଦ୍ଦେଶ୍ୟ ସହରର ବାବୁମାନେ ଘରତୋଳା ଅବା ଅନ୍ୟାନ୍ୟ ଦିନମଜୁରିଆ କାମରେ ମିସ୍ତ୍ରୀ ଅବା ମୁଲିଆ ଦରକାର କଲେ ଏହି ନିର୍ଦ୍ଦିଷ୍ଟ ବ୍ୟାଙ୍କ ସାମ୍ନାରୁ ସେମାନଙ୍କୁ ଡାକି ନେବେ, ଡାକି ନିଅନ୍ତି ମଧ୍ୟ । ଅନିୟନ୍ତ୍ରିତ ଭାଗ୍ୟସ୍ରୋତକୁ ନିୟନ୍ତ୍ରିତ କରିବା ଲାଗି ଗରିବ ଶ୍ରେଣୀର ଏହା ଗୋଟିଏ ବ୍ୟବସ୍ଥାପିତ ନିତିଦିନିଆ ଘଟଣା ।

ରୀତିମତ ଦାରିଦ୍ର୍ୟତା ଦୂରପାଇଁ ମଣି ମଧ୍ୟ ଜୀବନ ସଂଗ୍ରାମରେ ପ୍ରତ୍ୟେକ ଦିନ ପ୍ରସ୍ତୁତ ହୁଏ । ଅନ୍ୟ କେତେଜଣ ପଡୋଶୀ ସ୍ଥାନୀୟ କର୍ପୋରେଟର ସୁବଳ ନାଏକକୁ ହାତଗୁଞ୍ଜା ଦେଇ ଇନ୍ଦିରା ଆବାସରେ ଅନ୍ୟ ସ୍ଥାନରେ ଘର ଖଣ୍ଡିଏ ଲେଖାଏଁ ପାଇଛନ୍ତି ବୋଲି ମଣି ଅନେକଙ୍କ ମୁହଁରୁ ଶୁଣିଛି । ମଣି ଅନ୍ୟମାନଙ୍କ ଭଳି ଚତୁର ନୁହଁ । ତେଣୁ

ତା ଭାଗ୍ୟରେ ଇନ୍ଦିରା ଆବାସ ଘର ସାତସପନ । ନା ବି.ପି.ଏଲ୍ ରେସନ୍ କାର୍ଡଟିଏ ନା ଇନ୍ଦିରା ଆବାସର ଘରଟିଏ ମଣି ମାଝି ଭାଗ୍ୟରେ ଜୁଟିପାରିଲା । ମଣି ମନଦୁଃଖରେ ସ୍ତ୍ରୀ ସୁଲିକୁ ଇନ୍ଦିରା ଆବାସ ଆଉ ରେସନକାର୍ଡ ନ ପାଇବା କଥା କହିଲା । ସୁଲି ମଣିର ମନ ଊଣା ନ ହେଉ ସେଥିପାଇଁ ଆଶାର ପ୍ରଦୀପକୁ ମନରୁ ନ ଲିଭାଇବାକୁ ଯାଇ କହିଥିଲା, ମୁଁ ଆମ ପୁଅର ଟିଉସନ୍ ସାର୍‌ଙ୍କ ମୁହଁରୁ ଶୁଣିଛି ଆମେରିକାର ପୂର୍ବତନ ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ କେମିତି ନିଜ ଜୀବନରେ ପରାଜୟ ସ୍ୱୀକାର ନକରି ନିଜ ଲକ୍ଷ୍ୟ ସ୍ଥିରରଖି ଅଗ୍ରସର ହୋଇଥିଲେ ଓ ଅନେକ ବାଧାବିଘ୍ନ, ଦାରିଦ୍ର୍ୟତା ଓ ତିରସ୍କାର ସତ୍ତ୍ୱେ ପରିଶେଷରେ ଆମେରିକାର ରାଷ୍ଟ୍ରପତି ହୋଇପାରିଥିଲେ । ଆମଦେଶର ପୂର୍ବତନ ରାଷ୍ଟ୍ରପତି ଅବଦୁଲ କାଲାମ୍ ମଧ୍ୟ ଦିନେ ନଅଜଣ ପାଇଲଟ୍ ଟ୍ରେନିଂ ପ୍ରତ୍ୟାଶୀଙ୍କ ମଧ୍ୟରେ ସାକ୍ଷାତକାର ଦେବାକୁ ଯାଇ ନିରାଶ ହୋଇଥିଲେ । ସେ ଜଣିଏ ମାତ୍ର ପାଇଲଟ୍ ଟ୍ରେନିଂରୁ ବଞ୍ଚିତ ହେଲେ ଅନ୍ୟମାନେ ଟ୍ରେନିଂ କୋର୍ସରେ ଭର୍ତ୍ତି ହେଲେ । କିନ୍ତୁ ଅବଦୁଲ କଲାମ ନିଜର ଦୃଢ ମନୋବଳ ବଜାୟ ରଖିଲେ । ନିରାଶ ନହୋଇ ନିଜ ଲକ୍ଷ୍ୟପଥରେ ଆଗେଇଲେ । ମିସାଇଲମ୍ୟାନ ରୂପେ ଶ୍ରେଷ୍ଠ ବୈଜ୍ଞାନିକ ହୋଇ ପ୍ରସିଦ୍ଧି ପାଇଲେ ଓ ପରିଶେଷରେ ଭାରତର ରାଷ୍ଟ୍ରପତି ମଧ୍ୟ ହୋଇପାରିଲେ । ରାଷ୍ଟ୍ରପତି ହୋଇ ଦିନେ ଗୋଟିଏ ସରକାରୀ ଗସ୍ତରେ ଯାଇ ଗୋଟିଏ ବିମାନ ବନ୍ଦରରେ ବିମାନରୁ ଓହ୍ଲାଇବା ସମୟରେ ତଳେ ତାଙ୍କୁ ଅନେକ ପାଇଲଟ୍ ଧାଡିରେ ଛିଡାହୋଇ ସାଲ୍ୟୁଟମାରି ଅଭିବାଦନ ଜଣାଇ ସମ୍ମାନିତ କରିଥିଲେ । ସେହି ସମୟରେ ଅଭିଭୂତ ହୋଇ ସେ ଚିନ୍ତା କରିଥିଲେ । 'ମୁଁ ଯଦି ଜଣେ ବିମାନ ଚାଳକ ହୋଇଥାନ୍ତି , ଆଜି କଣ ଏଭଳି ସମ୍ମାନ ପାଇପାରିଥାଆନ୍ତି ?'

ମଣି ସ୍ତ୍ରୀ ସୁଲିର କଥାରୁ ଏତିକି ବୁଝିଲା ଯେ, ସେ ମନଊଣା ନ କଲେ ତା ବସ୍ତିର ପେଟି ଠିକାଦାର ଭବି ସାହୁ ଭଳି କୋଠା ତିଆରି ଠିକା ନେଇପାରିବ । ସାଇକେଲକୁ ଛାଡି ମଟର ସାଇକେଲ ଅବା ସ୍କୁଟିଟିଏ ମଧ୍ୟ କିଣିପାରିବ । ନିଜେ ମଧ୍ୟ ଠିକାଦାରଟିଏ ହୋଇପାରିବ ।

ସବୁ ସ୍ୱପ୍ନ ଜୀବନରେ କାହାର ସତରେ ପରିଣତ ହୋଇପାରେ ନା ନାହିଁ ତାହା ତ ଅଜଣା, କିନ୍ତୁ ମଣିର ସ୍ୱପ୍ନ କରୋନା ମହାମାରୀର ଚଡକରେ ଭାଙ୍ଗିଗଲା । କରୋନା ସମଗ୍ର ବିଶ୍ୱବାସୀଙ୍କୁ କବଳିତ କଲାପରେ, ସେ ରହୁଥିବା ସହରରେ ମଧ୍ୟ ତାର ଭୟଙ୍କର କାୟା ବିସ୍ତାର କଲା । ମଣି ରହୁଥିବା ବସ୍ତିର ଅନେକ ଲୋକ ୨୦୨୧ ମସିହା ମହାମାରୀ କରୋନା କବଳରେ ପଡି ଜୀବନ ହାରିଲେ । ମଣି ମାଝିର ଠିକାଦାର,

ଯିଏ ପ୍ରାୟତଃ ମଣି ମାଝିକୁ କାମ ସହ ପାରିଶ୍ରମିକ ଦିଏ , ସେ ମଧ୍ୟ କୋଭିଡ ସେଣ୍ଟରରେ ଉତ୍ତମ ଚିକିତ୍ସା ପାଇବା ସତ୍ତ୍ୱେ ସପ୍ତାହେ କାଳ ମୃତ୍ୟୁ ସହ ସଂଗ୍ରାମ କରି ଜୀବନ ହାରିଲା । ସହରରେ ରୀତିମତ ଲକ୍‌ଡାଉନ୍ (ତାଲାବନ୍ଦ), ସଟ୍‌ଡାଉନ୍‌ର କଟକଣାରେ କାମଧନ୍ଦା ସବୁ ଠପ୍ ହୋଇଗଲା । ଯେଉଁ ନିର୍ଦ୍ଦିଷ୍ଟ ବ୍ୟାଙ୍କ ସମ୍ମୁଖରେ ସକାଳ ହେଲେ ମଜୁରିଆ, ମିସ୍ତ୍ରୀ, ଶ୍ରମିକମାନଙ୍କର ଭିଡ ଜମେ, ସେ ପଡିଆ ଫାଙ୍କା ଜନଶୂନ୍ୟ ଇଲାକା ହୋଇଗଲା ।

ଗୃହବନ୍ଦୀଙ୍କ ଭଳି ଅବସ୍ଥା ମଣିର ହେଲା । ତା ସଙ୍ଗେ ସଙ୍ଗେ ରୋଜଗାର ମଧ୍ୟ ହରାଇଲା । ସ୍ତ୍ରୀ ସୁଲି କଥାରେ ପରିବା ବେପାର କଲା ହେଲେ କଣ ହେବ ? ପରିବା ବିକ୍ରୀର ସ୍ୱତନ୍ତ୍ର କଳା ‘ଏଇଟା ବାବୁ ହାଇବ୍ରିଡ୍ ନୁହଁ ସଂପୂର୍ଣ୍ଣ ଦେଶୀ... ବାବୁ ଆଜିର ତଟକା ବାଡି ପରିବା.. ରାଇକିଆ ବିମ୍ ଇଯେ’ ଇତ୍ୟାଦି କଥା ଚାତୁରୀର ଜ୍ଞାନ ନଥିବାରୁ ସେ ପରିବା ବିକାଳି ଭାବରେ ତିଷ୍ଠି ପାରିଲା ନାହିଁ ।

ଏଣେ ସହର, ରାଜ୍ୟ, ଗ୍ରାମ ଓ ସମଗ୍ର ଦେଶରେ ସବୁ ଜିନିଷର ମହଙ୍ଗାମାଡ । ପେଟ୍ରୋଲ, ଡିଜେଲ ଠାରୁ ଆରମ୍ଭ କରି ଖାଇବା ତେଲର ଦରଦାମ ତାତିରେ ମଣି ଆଉ ତା ଭଳି ଅନେକଙ୍କ ଘରେ ଦୁଇ ଓଳି ଚୁଲି ଜଳିପାରିଲା ନାହିଁ ।

ଯେଉଁଦିନ ମଣିର ସ୍ତ୍ରୀ ସୁଲିର ଦେହ ଖରାପ ହେଲା ମଣି ଚିନ୍ତାକଲା, ସୁଲିକୁ ସରକାରୀ ଡାକ୍ତରଖାନା ନେଇଯାଇ ସେଠାରୁ କିଛି ଔଷଧ ଆଣି ଖୁଆଇବ । ସୁଲିର ଜ୍ୱର, ଥଣ୍ଡା, କାଶ ଅବା ବାନ୍ତି ହେଲେ ସେ ଅନେକଥର ସରକାରୀ ଡାକ୍ତରଙ୍କ ପରାମର୍ଶରେ ଔଷଧ ଆଣି ଖୁଆଇଛି । ସୁଲି ସୁସ୍ଥହୋଇ ପୁନର୍ବାର କାର୍ଯ୍ୟକ୍ଷମ ହୋଇପାରିଛି ।

ଏଥର କିନ୍ତୁ ସୁଲି ଶରୀରରେ ବିଗତ କିଛି ଦିନ ହେବ ଭିନ୍ନ ଭିନ୍ନ ଲକ୍ଷଣ ଦେଖାଦେଇଛି । ଠିକ୍ ରୂପେ ନିଃଶ୍ୱାସ ନେବାରେ କଷ୍ଟ ଅନୁଭବ କରିବା ସହ ମଝିରେ ମଝିରେ ଦେହର ତାତି ବଢିଯାଇଛି ।

ମଣି ଚିହ୍ନା ଅଟୋରିକ୍ସାଟିଏ ଡାକିଲା, ପୁଅ ଓ ସ୍ତ୍ରୀକୁ ଧରି ଡାକ୍ତରଖାନା ବାହାରିଲା । ଡାକ୍ତରଖାନାରେ ଅନେକ ଲୋକଙ୍କ ଭିଡ, ସଭିଏଁ ମୁହଁରେ ତୁଣ୍ଡିବାନ୍ଧି ଲାଇନ୍ ଲଗେଇଛନ୍ତି । ଯେତେବେଳେ ସୁଲିର ପାଳି ଲାଇନ୍‌ରେ ପଡିଲା ଡାକ୍ତରବାବୁ ବେଶ ସାମାଜିକ ଦୂରତା ରକ୍ଷାକରି ତୁମେ ଓ ତୁମ ସହ ଆସିଥିବା ଘରଲୋକ କହିଲେ ଆଗ କୋଭିଡ ଟେଷ୍ଟ (କୋରୋନା ପରୀକ୍ଷା) କରି ଆସ । ମୁଁ ତାପରେ ଯାଇ ଉପଯୁକ୍ତ ଔଷଧ ଲେଖିବି । ତୁମେ ଏହି ଡାକ୍ତରଖାନାରୁ ସବୁ ଔଷଧ, ଇଞ୍ଜେକସନ୍ ପାଇବ ।

ସହରରେ କୋଭିଡ୍ ପରୀକ୍ଷା ଅନ୍ୟ ଏକ ବଡ ଡାକ୍ତରଖାନାରେ ହେଉଥିଲା । ଏଣୁ ମଣି ସପରିବାର ତା ପରଦିନ ସହରର ସରକାରୀ ବଡ ଡାକ୍ତରଖାନାକୁ ନେଲା । ସେଠାରେ ମୁହଁରେ ତୁଣ୍ଡି, ହାତରେ ସାନିଟାଇଜର ବୋଳିହେବା ସହ ଲମ୍ବା ଲାଇନ୍‌ର ଶୃଙ୍ଖଳା । ସୁଲି ଦେହରେ ଆଉ ଚଳପ୍ରଚଳ ହେବା ପାଇଁ ବଳ ପାଉ ନଥାଏ । ମଣି ସୁଲିକୁ ଆଶ୍ୱାସନା ଦେଇ ବାରମ୍ବାର କହୁଥାଏ, ମୁଁ ଅଛି, ତୋର କିଛି ହୋଇନାହିଁ । ସାମାନ୍ୟ ଘୋଳାବିନ୍ଧା ଜର, ଭଲ ହୋଇଯିବୁ , ଇତ୍ୟାଦି ଇତ୍ୟାଦି । ସରକାରୀ ଡାକ୍ତରଖାନାରେ ସୁଲିର କେବଳ କରୋନା ପଜେଟିଭ୍ ରିପୋର୍ଟ ଆସିଲା । ଦାରିଦ୍ର୍ୟତା, ଅଭାବ ଭିତରେ ହନ୍ତସନ୍ତ ମଣି ପାଇଁ ଜୀବନ ଦୁର୍ବିସହ ହେବାକୁ ଲାଗିଲା । ନିଜର ବୋଲି କେହିନାହାନ୍ତି ମଣିର । ଏତେ ବଡ ସହରରେ ସମସ୍ତେ ତାକୁ ଭୀଷଣ ଅଚିହ୍ନା, ପର ପର ଲାଗିଲେ । ସୁଲି ନିଜର ଦୈନିକ ଖର୍ଚ୍ଚ କାଟ୍‌କରି ଯାହା ମାଟିସରାରେ ରଖିଥିଲା ତା ମଧ୍ୟ ଏଇ କରୋନା କାଳରେ ସରିସରି ଆସୁଛି । ସାଇରେ ସୁଲି କିଛି ସ୍ତ୍ରୀ ଲୋକଙ୍କ ସହମିଶି ଚିଟ୍‌ଫଣ୍ଡଟିଏ ଖୋଲିଥିଲା । ଖଟାଇବା ଟଙ୍କାର ଲାଭାଂଶ ମଧ୍ୟ ଶେଷ ହେବାକୁ ବେଶୀ ଦିନ ଲାଗିବ ନାହିଁ ।

ସରକାରୀ ଡାକ୍ତରଙ୍କ ପରାମର୍ଶରେ ସୁଲିକୁ ନେଇ ମଣି ମାଝୀ କୋଭିଡ ସେଣ୍ଟରରେ ପହଞ୍ଚାଇଲା । ସାଙ୍ଗରେ ନାବାଳକ ପୁଅ । ନୀରବରେ ଖାଲି ବାପା ସଙ୍ଗେ ସଙ୍ଗେ ଚାଲିଥାଏ । ମୁହଁରୁ ଶବ୍ଦଟିଏ ମଧ୍ୟ ବାହାରୁନଥାଏ । ବାକ୍‌ଶୂନ୍ୟ ନାବାଳକର ମୁହଁ ଦେଖି ସ୍ୱାମୀ ସ୍ତ୍ରୀଙ୍କ ଆଖିରେ ଲୋତକ ।

କୋଭିଡ୍ ହସ୍‌ପିଟାଲରେ ସମସ୍ତ କର୍ମଚାରୀ ନର୍ସ, ଡାକ୍ତର, ପିପିପି କିଟ୍‌ରେ ଏକ ଅଜଣା ଅଶୁଣା ଇଲାକାର ଜୀବଭଳି ମଣିକୁ ଦେଖାଗଲେ । ମଣି ରିପୋର୍ଟ ଦେଖାଇଲା ହସପିଟାଲରେ । କରୋନାର ସମ୍ମୁଖ ଯୋଦ୍ଧାମାନେ ସୁଲିକୁ ଗୋଟିଏ ସଫା ଧଳାଚାଦର ପଡିଥିବା ଖଟିଆରେ ନେଇ ଶୁଆଇ ଦେଲେ । ସୁଲିର ଚଳନଶକ୍ତି ନଥିଲା ବାକ୍‌ଶକ୍ତି ମଧ୍ୟ ଦୁଇଦିନ ମଧ୍ୟରେ କ୍ଷୀଣରୁ କ୍ଷୀଣ ହେବାକୁ ଲାଗିଲା । ସୁଲିକୁ କରୋନାମୁକ୍ତ କରିବାପାଇଁ ଦିନରାତି ଅହରହ ଡାକ୍ତର ନର୍ସ ଲାଗିଥିଲେ, କିନ୍ତୁ ତିନିଦିନ ପରେ କୋଭିଡ ସେଣ୍ଟରରେ ସୁଲି ଆଖି ବୁଜିଲା । ଅନେକ କରୋନା ରୋଗୀ ସୁସ୍ଥ ହୋଇ ଘରକୁ ଫେରୁଛନ୍ତି । କିନ୍ତୁ ସୁଲିକୁ ମଣି ବଞ୍ଚେଇ ପାରିଲା ନାହିଁ । ସୁଲିର ଆଖିରେ ଦେଖିଥିବା ସ୍ୱପ୍ନ ମଣିପାଇଁ ସତେ ଯେମିତି ଧୂଳିସାତ୍ ହେଲା ।

ଗରିବ ସ୍ୱାମୀ ଓ ସ୍ତ୍ରୀ ଦେଖିଥିବା ଅସରନ୍ତି ଭବିଷ୍ୟତର ସୁନେଲୀ ସ୍ୱପ୍ନ ଭାଙ୍ଗିଗଲା । ସବୁ ସତେ ଯେମିତି କେବଳ ସ୍ମୃତିର ପାଉଁଶ ମୁଠାଏ ।

ସୁଲି ଥିଲା ପରମକରୁଣାମୟ ସର୍ବମଙ୍ଗଳ ବିଧାନକର୍ତ୍ତା । ପରଂବ୍ରହ୍ମ ଶ୍ରୀ ଜଗନ୍ନାଥଙ୍କ ପରମଭକ୍ତ । ସୁଲି ପ୍ରତ୍ୟେକ ଦିନ ପ୍ରାତଃ ସ୍ନାନକରି ମଣିକୁ ଗିନାରେ ଗିନାଏ ମାଣ୍ଡିଆ ଆଉ ରାତିରେ ବଳିଥିବା ଦୁଇଚାରିଖଣ୍ଡ ରୁଟି ସହ ଆଳୁପିଆଜର ସନ୍ତୁଳାଭଜା ଖାଇବାକୁ ଦେବାପରେ ପୁଅ କଥା ବୁଝେ । ଉଭୟଙ୍କୁ ଘରୁ ବିଦା କରିବାପରେ ନିଜ ସାଇରେ ଘରପାଖରେ ଥିବା ଶ୍ରୀଜଗନ୍ନାଥଙ୍କ ମନ୍ଦିରକୁ ଯାଇଥାଏ । ସୁଲି ଖଜା, ପୂଜାସାମଗ୍ରୀ ଦୋକାନରୁ କିଣି ଦୀପଟିଏ ଜାଳି ପୂଜାର୍ଚ୍ଚନା କରିବାପରେ ଘରକୁ ଫେରେ । ସୁଲି ଜଗନ୍ନାଥଙ୍କ ପ୍ରସାଦ ପ୍ରତ୍ୟେକ ଦିନ ପ୍ରାୟତଃ ସଧାରେ ମଣିକୁ ଦେଇଥାଏ । ମଣି ଜଗନ୍ନାଥ ମନ୍ଦିର ପ୍ରସାଦ ଖାଇ ସୁଲିକୁ ପଚାରେ ଆଜି କାଳିଆଠାକୁର ସାଆନ୍ତଙ୍କୁ କଣ ମାଗିଲୁ ? କାଳିଆ ଠାକୁର ତୋ କଥା ଶୁଣିଲେ ? ଯଦି ଶୁଣିଲେ ଉତ୍ତରରେ କଣ କହିଲେ ? ସୁଲି କେବଳ ମୁରୁକୁନ୍ଦି ହସଟିଏ ମୁହଁରେ ଫୁଟାଇ ନିଜର ରୋଷେଇବାସ କାମରେ ଲାଗିପଡେ ।

ଥରେ ଆଷାଢ଼ ମାସର ବର୍ଷାଭିଜା ସକାଳ । ମଣି କାମକୁ ବାହାରି ନଥାଏ । ସୁଲି ମନରେ ଅନେକ ଦିନରୁ ବସାବାନ୍ଧି ରହିଥିବା ମନକଥା ମଣି ଆଗରେ ଖୋଲିକହିବ କହିବ ହେବା ଜାଣିପାରି ସୁଲିର ଆଖିରେ ଆଖି ମିଶାଇ ମଣି ପଚାରିଲା, ଆଲୋ ! କଣ କହିବାକୁ ଚାହୁଁଛୁ କହୁନୁ ! ଏସନପରା ଆମକଥା ବଡଠାକୁର ଶୁଣି ଆମକୁ ନୂଆ କୁଣିଆଟିଏ ପୁଅ ରୂପରେ ପଠାଇଛନ୍ତି । ଏସନ ରଥଯାତରାକୁ ନହେଲେ ବାହୁଡା ଯାତ ନଚେତ୍ ନିଳାଦ୍ରୀବିଜେ ପୂର୍ବରୁ ରଥଉପରେ ବଡ ଠାକୁରଙ୍କ ସୁନାବେଶକୁ ତୋତେ ଆଉ ଆମ ପୁଅ ଅଭିକୁ ଧରିଯିବି ।

ସୁଲି ବିସ୍ଫୋରିତ ଆଖିଯୁଗଳରେ ଆନନ୍ଦାଶ୍ରୁଭିଜା ଆଖିପତାରୁ ଦୁଇଠୋପା ଲୁହ ପୋଛୁ ପୋଛୁ ଭାବିଲା ମନର କଥା ଅନ୍ତର୍ଯ୍ୟାମୀ ଶ୍ରୀ ଜଗନ୍ନାଥ ମୋ ପାଟିରୁ ନ ବଖାଣି ତୁମ କଣ୍ଠରେ ବିରାଜ ହୋଇ କହିଦେଲେ ।

ମଣି ବୁଝିଗଲା ସୁଲି ପୁରୀ ଶ୍ରୀକ୍ଷେତ୍ର ଯାଇ ଜଗା ଦରଶନ ପାଇଁ ମନ ବଳାଇଛି । ସେ କଥାହେଲା ଆଷାଢ ଦ୍ୱିତୀୟା ରଥଯାତରା ଆସିଲେ ପୁରୀ ଯିବା ନିଶ୍ଚିତ ।

ରଥଯାତରା ଆସିଲା ବାହୁଡାବାସୀ ସୁନାବେଶ ଦିନ ସକାଳୁ ସକାଳୁ ସହରରେ ବସ୍‌ଷ୍ଟାଣ୍ଡରୁ ସପରିବାର ବସଯାତ୍ରାକରି ପୁରୀରେ ପହଞ୍ଚିଲେ । ପୁରୀରେ ପହଞ୍ଚିବା ସମୟରେ ଦିନ ଗୋଟାଏ ହେଲା । ଗୋଟିଏ ସଫାସୁତୁରା ହୋଟେଲରେ କିଛି ଖାଇସାରି ବଡଦାଣ୍ଡରେ ଚାଲିଲେ ଶ୍ରୀମନ୍ଦିର ମୁହାଁହୋଇ । କ୍ଷୀଣ ଶରୀରରେ ଲୋଚାମୋଚା ସାର୍ଟ ପିନ୍ଧିଥିବା ହାଡଟଣା ରିକ୍ସାବାଲାଟିର ସହାୟତାରେ ମଣି ସପରିବାର ବସିପଡିଲା । ମଣି

ରିକ୍ସାବାଲାକୁ ପଚାରିଲା କେତେବାଟ ଆମକୁ ନେଇପାରିବ ? ରିକ୍ସାଚାଳକ କହିଲା ରଥ ପାଖାପାଖି ଯେଉଁଠି ପୋଲିସ୍ ଅଟକାଇ ରଖୁଛି ସେ ଯାଏଁ ନେଇଯିବି । ତିନି ରଥ ଖଣ୍ଡେବାଟରେ ଥିଲା, ମଣି -ସୁଲି ଓ ତାଙ୍କ ପୁଅ ତିନିହେଁ ଓହ୍ଲାଇଲେ । ବଡଦାଣ୍ଡ ରାସ୍ତା ଦୁଇପାର୍ଶ୍ୱରେ ଉଠାବେପାରୀଙ୍କ ପସରା ଲମ୍ବି ଯାଇଥାଏ ବଡଦାଣ୍ଡର ରଥଠାରୁ ଅନତି ଦୂରଯାଏଁ । କିଏ ଜଗନ୍ନାଥଙ୍କ ସୁନ୍ଦର ସୁନ୍ଦର ଚିତ୍ର ସମ୍ବଳିତ ଲକେଟ୍, ହାର, ମୁଦି, ଘରସଜ୍ଜା ଶ୍ରୀ ମନ୍ଦିରର ମୂର୍ତ୍ତି, ବିଗ୍ରହଙ୍କ କାଠମୂର୍ତ୍ତି, ଶଂଖ, ଚୂନ ପଥରର ଜଗନ୍ନାଥ ବିଗ୍ରହ ତ ଆଉ କିଏ ଚୂଡି, ହାର, କାଗଜ ଫଟୋ, ବନ୍ଧେଇ ହୋଇଥିବା ଚତୁର୍ଦ୍ଧାମୂର୍ତ୍ତି ଧରି ବସିଛନ୍ତି । ମଣି ତାର ସପରିବାର ସହ ପୁରୀ ଆସିବାର ଏହା ପ୍ରଥମ ଅପୂର୍ବ ଅନୁଭୂତି ।

ସୁନାବେଶ ଅବସରରେ ବଡଦାଣ୍ଡରେ ଯିବା ସମୟରେ ସମଗ୍ର ସତ୍ତା ଜଗନ୍ନାଥମୟ ଅନୁଭୂତିରେ ସିକ୍ତହେଲା ମଣି ଓ ସୁଲି ଉଭୟଙ୍କର । ପୁଅ ଅଭିକୁ ପତିତପାବନ ବାନା ଆଡେ ଦେଖାଇ ହାତ ଉଠାଇ ପ୍ରଭୁ ପରଂବ୍ରହ୍ମଙ୍କର ଆଶୀର୍ବାଦ ଭିକ୍ଷା କଲେ । ସାନପୁଅଟି ଅଖିତରାଟି ତାର ଛୋଟ ଛୋଟ ହାତ ପାପୁଲି ଦିଇଟି ଶ୍ରୀ ମନ୍ଦିର ଆଡକୁ ବଢାଇଲା । ହରିବୋଲ, ଜୟ ଜଗନ୍ନାଥ ଧ୍ୱନୀରେ  ବଡଦାଣ୍ଡ ଉଚ୍ଛୁଳିପଡୁଥାଏ । ଅନେକ ଶ୍ରଦ୍ଧାଳୁ ରଥମୁହାଁ ଚାଲିଥାନ୍ତି ।

ଅନେକ ଦିନର ଇପ୍‌ସିତ ଇଛା ସୁଲିର ପୂର୍ଣ୍ଣ ହୋଇଛି । ସେ ତାର ପରମାରାଧ ଦେବତା ଶ୍ରୀ ଜଗନ୍ନାଥଙ୍କୁ ପୁରୀରେ ସୁନାବେଶରେ ଦର୍ଶନ ପାଇବ । ଚାଲୁ ଚାଲୁ ହଠାତ୍ ସୁଲିର ପାଦ ଅଟକିଗଲା ଜଣେ ବେପାରୀର ପସରା ପାଖରେ । ଶ୍ରୀ ଜଗନ୍ନାଥ ତଥା ଚତୁର୍ଦ୍ଧାମୂର୍ତ୍ତିଙ୍କ ସୁନ୍ଦର କାଠଗଢା ମୂର୍ତ୍ତି ଦେଖି ସେ ଆକର୍ଷିତ ହେଲା । ମୂର୍ତ୍ତି ସବୁ ଚମତ୍କାର ଦିଶୁଥାନ୍ତି । ସୁଲିର ଇଛାହେଲା କିଣି ନିଅନ୍ତା କି ଏସବୁ ! ପରମୁହୂର୍ତ୍ତରେ ପରିବାରର ଅସ୍ୱଚ୍ଛଳ ଆର୍ଥିକ ସ୍ଥିତି ବିଷୟରେ ଚିନ୍ତାକରି ସାହସ ଯୁଟାଇପାରିଲା ନାହିଁ ମୂର୍ତ୍ତିର ଦାମ କେତେ ପଚାରିବାକୁ । ତଥାପି ଗୋଟିଏ ସୁନାରଙ୍ଗ ଦିଆଯାଇଥିବା ଲକେଟ କିଣିଲା । କଳାସୂତାରେ ବାନ୍ଧିବାକୁ କହିଲା । ମାତ୍ର ପଚିଶ ଟଙ୍କା ଦେଇ ନିଜେ ବେକରେ ନାଇଲା । ମଣି କିନ୍ତୁ ଆଗ୍ରହ ସହକାରେ ପଚାରୁଥାଏ ଆଉ କଣ କିଣିବୁ ? କହ, ସୁଲି ମୁଣ୍ଡ ଟୁଙ୍ଗାରୀ ମନାକଲା ।

ସନ୍ଧ୍ୟା ସମୟ । ରଥ ଉପରେ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ କରି  ମଣି ପରିବାର ଅନନ୍ୟ ଅନୁଭୂତି ସାଉଁଟିଲେ । ଆଶୀର୍ବାଦ ଭିକ୍ଷାକରି ପରିତୃପ୍ତିରେ ନିଜ ସହରକୁ ନିଜର ଦୁଇବଖରା ଘରକୁ ଫେରିଲେ ।

ତା'ପରଦିନଠାରୁ ପୂର୍ବବତ୍ ଗତାନୁଗତିକ ରୀତିରେ ଇଟା ଲିପାପୋଛା ଟିଣ ଛାତ ଘର ସାମ୍ନାରେ ସୂର୍ଯ୍ୟକିରଣ ପଡିବାପରେ ମଣିର ପରିବାରରେ କାମଦାମ ଆରମ୍ଭ ହୋଇଯାଏ । ସେ ନିର୍ଦ୍ଦିଷ୍ଟ ବ୍ୟାଙ୍କ ସାମ୍ନାରେ କାମ ତଲାସିରେ ଲାଗିଯାଏ ମଣି । ବିଦ୍ୟାଳୟକୁ ପୁଅକୁ ପଠାଇ ଶ୍ରୀଜଗନ୍ନାଥ ମନ୍ଦିର ଯିବା କାମ ସୁଲି କରେ । କିନ୍ତୁ ଏଇ ବର୍ଷ ମହାମାରୀ କରୋନା ସବୁ ଏପଟ ସେପଟ କରିଦେଲା ।

ମଣି ହସପିଟାଲରେ ସେଇ ନିର୍ଦ୍ଦିଷ୍ଟ ବେଡ୍‌ରେ ସୁଲିର ନିଶ୍ଚଳ ଶରୀର ପାଖରେ ହତବାକ୍ ହୋଇ ଠିଆ ହୋଇଥାଏ । ଅହରହ ମଣି ମନରେ ଅନେକ ଭାବନାର ଭାରାକ୍ରାନ୍ତ ଢେଉ । ସୁଲିର ନିଶ୍ଚଳ ଶରୀର ଗଳାରେ ବିଗତ ଦୁଇବର୍ଷ ତଳେ ପୁରୀ ବଡଦାଣ୍ଡରୁ ଆଣିଥିବା ସେହି କଳାସୂତାର ହାରରେ ଲକେଟ୍‌ଟି ଆଲୁଅରେ ଚକ୍‌ଚକ୍ ଦିଶୁଥାଏ । ମଣିର ନଜର ହଠାତ୍ ସେଇ ଲକେଟ୍ ଆଉ ତା ଭିତରେ ଥିବା ଶ୍ରୀ ଜଗନ୍ନାଥଙ୍କ ଚିତ୍ର ଉପରେ ପଡିଲା । ମଣି ଅଭିମାନ ଜର୍ଜରିତ ହୋଇ ବଡଠାକୁରଙ୍କୁ ଅନେକ କିଛି କହିବାକୁ ଚାହିଁଥିଲା । କଣ ଅବା ସେ କହିବ ? ନୀରବ ଠାକୁର ନୀରବ ସବୁ ଶବ୍ଦ । ନୀରବ ମଣିର ପୁଅ ।

ଅସହାୟ ବିସ୍ତୀର୍ଣ୍ଣ ମରୁଭୂମିରେ ମଣି ଏକାକୀ ହୋଇଯାଇଛି । ଏତିକିବେଳେ ସୁଲିର ବୃଦ୍ଧ ବାପା, ମା ଓ ସାନଭଉଣୀ ଡଲି ଆସି କୋଭିଡ ସେଣ୍ଟରର ସେଇ ନିର୍ଦ୍ଦିଷ୍ଟ ବେଡ ପାଖରେ ଅଚାନକ ହାଜର ହେଲେ । ସାଙ୍ଗରେ ମଣିର ଶାଳକ ମଧ୍ୟ ଥିଲେ । ସୁଲିର ଦେହ ଖରାପ ବିଷୟରେ ସେମାନେ ସୁଲି ଓ ମଣି ରହୁଥିବା ସାଇର ଜଣେ କିଏ ଡଲିକୁ ମୋବାଇଲ ବାର୍ତ୍ତାରେ ଜଣାଇବା ପରେ ସେମାନେ ଆସି ପହଞ୍ଚିଛନ୍ତି ବୋଲି ମଣିକୁ ଜଣାଇଲେ । ଲକ୍‌ଡାଉନ୍ ପରିସ୍ଥିତିରେ ବସ୍ ଓ ଟ୍ରେନ୍ ଚଳାଚଳ ବନ୍ଦ ଥିଲା । ତେଣୁ ପୂର୍ବରୁ ଆସିପାରିଲୁ ନାହିଁ । ଆଜି ଗୋଟିଏ ଗାଡି ଭଡାକରି ତାଙ୍କ ଅଞ୍ଚଳର ଥାନାବାବୁଙ୍କ ଜଣାଇ ଅନୁମତିପତ୍ର ସାଙ୍ଗରେ ଧରିଆସିଛୁ ବୋଲି ମଧ୍ୟ ଜଣାଇଲେ । ସୁଲି ଯେ ଆଉ ନାହିଁ ଏ ଇହଜଗତରେ ଜାଣିବା ପରେ ବୃଦ୍ଧ ବାପା ମାଆ ସପରିବାର ଆଖିରୁ ଲୁହଝରାଇ କିଛି ସମୟ ଡାକ୍ତରଖାନାର ପିଣ୍ଡାଟା ଉପରେ ବସିରହିଲେ ।

ଡାକ୍ତରଖାନାରୁ ମୃତ୍ୟୁପ୍ରମାଣ ସହ ମଣି, ସାନପୁଅ ଓ ଅନ୍ୟମାନେ ବାହାରି ଆସିଲେ । ତା ପରଦିନ ରାତି ପାହିଲା । ଯଥାବିଧି ଶବସତ୍କାର କଲେ ଡାକ୍ତରଖାନା କର୍ମଚାରୀମାନେ ।

ଏମିତି ଲକ୍‌ଡାଉନ୍ ଯେ ସହର ଜନଶୂନ୍ୟ ପ୍ରତୀକ ହେଉଥିବା ସମୟରେ ବାରଦିନ ବିତିଗଲା । ସୁଲିର ବୃଦ୍ଧ ପିତା ଓ ମାତା, ମଣିକୁ ସେହି ଛୋଟଘରେ ଏକାନ୍ତରେ ପାଖକୁ

ତେରଦିନ ସକାଳେ ଡାକି କହିଲେ, ସମସ୍ତଙ୍କର ଆହାଃ, ଚୁ..ଚୁ ଅବା ସମବେଦନା କେତେଦିନ ତୁମେ ଶୁଣିବ ? ସାନପୁଅଟିର ଭବିଷ୍ୟତ ଅଛି । ତା କଥା ତ ପୁଣି ଜଣେ କିଏ ବୁଝିବା ଦରକାର ନା ନାହିଁ ?

ତେଣୁ ଆମେ ସ୍ଥିର କରିଛୁ, ଆମ ସାନଝିଅ ଡଲିର ହାତକୁ ତୁମ ହାତରେ ଦେଇଦେବୁ । ହୁଏତ ସୁଲିର ଆତ୍ମା ଶାନ୍ତି ପାଇବ । ଝିଅ ଡଲିର ମତାମତ ଆମେ ଦୁହେଁ ନେଇସାରିଛୁ । ସେ ସମ୍ମତି ଦେଇଛି । ଆମ ପରିବାର ସଭିଏଁ ଏଥିରେ ସମ୍ମତ । ତୁମେ କଣ କହୁଛ ?

ମଣି ଜଗନ୍ନାଥ ଫଟୋ ସମ୍ବଳିତ ଛୋଟ ଲକେଟ୍‌ର କରିସ୍ମା ବିଷୟରେ ଭାବୁଥାଏ । ଏଣେ ସେହି ଛୋଟ ଘରଟି ଭିତରେ କାନ୍ଥରେ ଟଙ୍ଗା ହୋଇଥିବା ଫଟୋ ଚିତ୍ରରୁ ଶ୍ରୀ ଜଗନ୍ନାଥ ସତେ ଯେମିତି ସେମାନଙ୍କ ଉପରେ ନଜର ରଖିଥିଲେ । ମଣି ସେମାନଙ୍କ କଥାରେ ହଁ ଭରିଲା ।





ଶ୍ରୀ ନରେନ୍ଦ୍ର ନେପାକ (ଆଡଭୋକେଟ)

ପିତା : ସ୍ୱର୍ଗତ ଭାଗୀରଥି ନେପାକ
ମାତା : ଅନୁସୂୟା ନେପାକ
ଜନ୍ମ : ୧୯୬୬, ଭୁବନେଶ୍ୱର

ଶିକ୍ଷା : କ୍ୟାପିଟାଲ ହାଇସ୍କୁଲ, ୟୁନିଟ୍ -୩, ଭୁବନେଶ୍ୱର
ବେସିକ ସାଇନ୍ସ କଲେଜ, ଓୟୁଏଟି, ଭୁବନେଶ୍ୱର
କ୍ୟାପିଟାଲ ଲ କଲେଜ, ଭୁବନେଶ୍ୱର

ପ୍ରକାଶିତ ପୁସ୍ତକ
କଥା ଉପକଥା – ଗଳ୍ପ ସଂକଳନ (୧୯୯୯)
ଅନ୍ୟ ଏକ ସକାଳ – ଉପନ୍ୟାସ
ଅସୀହୀନ ବିପ୍ଳବ – ଗଳ୍ପ ସଂକଳନ (୨୦୧୭)